# ଚୁପ୍! କୋର୍ଟ ଚଳିଛି

# ଚୁପ୍ ! କୋର୍ଟ ଚାଲିଛି

ମୂଳ ମରାଠୀ ରଚନା

ଶ୍ରୀ ବିଜୟ ତେନ୍ଦୁଲ୍‌କର

ଓଡ଼ିଆ ଅନୁବାଦ

ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ପଟ୍ଟନାୟକ

ପ୍ରକାଶକ

ଓଡ଼ିଶା ସଂଗୀତ ନାଟକ ଏକାଡ଼େମୀ

ଭୁବନେଶ୍ୱର

# ସୂଚନା

ଆଧୁନିକ ଭାରତୀୟ ନାଟ୍ୟ-ସାହିତ୍ୟ କ୍ଷେତ୍ରରେ ଯେଉଁ କେତେଜଣ ନାଟ୍ୟକାର ସେମାନଙ୍କର ବଳିଷ୍ଠ ରଚନା ଦ୍ୱାରା ସର୍ବଭାରତୀୟ ସ୍ତରରେ ଖ୍ୟାତି ଲାଭ କରିଅଛନ୍ତି ସେମାନଙ୍କ ମଧ୍ୟରେ ମହାରାଷ୍ଟ୍ରୀୟ ନାଟ୍ୟକାର ଶ୍ରୀ ବିଜୟ ତେନ୍ଦୁଲ୍‌କର ଅନ୍ୟତମ । ତାଙ୍କର କେତେଗୁଡ଼ିଏ ନାଟକ ବିଭିନ୍ନ ଭାଷାରେ ଅନୁଦିତ ହୋଇ ବିଭିନ୍ନ ରାଜ୍ୟର ରଙ୍ଗମଞ୍ଚ ଗୁଡ଼ିକରେ ମଞ୍ଚସ୍ଥ ହୋଇଅଛି । ଗତବର୍ଷ ତାଙ୍କର ଗୋଟିଏ ନାଟକ 'ସଖାରାମ୍ ବାଇଣ୍ଡର' ବହୁଦିନ ଧରି କଟକରେ ଅଭିନୀତ ହୋଇଥିଲା । ଏବେ ଆମେ ଯେଉଁ 'ଚୁପ୍ ! କୋର୍ଟ ଚାଲିଛି', ନାଟକଟିକୁ ପ୍ରକାଶ କରୁଛୁ ତାହା ମଧ୍ୟ ଭୁବନେଶ୍ୱରଠାରେ ଏକାଧିକବାର ଅଭିନୀତ ହୋଇଯାଇଅଛି । 'ଚୁପ୍ ! କୋର୍ଟ ଚାଲିଛି' —ଯାହାର ମୂଳ ମରାଠୀ ନାମ ଥିଲା 'ଶାନ୍ତାତା ! କୋର୍ଟ ଚାଲୁ ଆହେ' ପ୍ରଥମେ ବୋମ୍ବେଠାରେ ୧୯୬୭ ଡିସେମ୍ବର ୧୦ ତାରିଖ ଦିନ ଅଭିନୀତ ହୁଏ । ସମାଜ ଚେତନାର ପୃଷ୍ଠଭୂମି ଉପରେ ଏକ ବିଶ୍ଳେଷଣାତ୍ମକ ଚିନ୍ତାଧାରାର ବଳିଷ୍ଠ ପରିପ୍ରକାଶ ପାଇଁ ଏହି ନାଟକଟି ଅଭିନୟର ପ୍ରଥମ ରଜନୀ ଠାରୁହିଁ ଅତି ଜନପ୍ରିୟ ଅଥଚ ଶକ୍ତିଶାଳୀ ନାଟକ ବୋଲି ବିବେଚିତ ହେଲା । ଭାରତର ଏକ

ସମ୍ମାନିତ ପୁରସ୍କାର — ଭାରତୀୟ ନାଟ୍ୟ ସଙ୍ଘର 'କମଳାଦେବୀ ଚଟ୍ଟୋପାଧ୍ୟାୟ ପୁରସ୍କାର' ଏହା ଲଭ କରିବାର ସୌଭାଗ୍ୟ ଅର୍ଜନ କରିଅଛି ।

ଓଡ଼ିଶାର ପାଠକ ଓ ରଙ୍ଗମଞ୍ଚ ନିକଟରେ ଏହି ନାଟକଟିକୁ ପହଞ୍ଚାଇ ଦେବା ଉଦ୍ୟମ କରି ଆମେ ଏହି ନାଟକଟିର ଅନୁବାଦ ଏବେ ପ୍ରକାଶ କରୁଅଛୁ । ଓଡ଼ିଆ ଆଧୁନିକ ନାଟକର ଅଗ୍ରଗତି କ୍ଷେତ୍ରରେ ଚିନ୍ତାର ବିନିମୟକୁ ଏହି ପ୍ରକାଶନ ସାହାଯ୍ୟ କରିବ ବୋଲି ଆମର ଆଶା ।

**ଶ୍ରୀ ମନୋରଞ୍ଜନ ଦାସ**

ସମ୍ପାଦକ

**ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ**

# ଅନୁବାଦକର ପଦେ

ପ୍ରସିଦ୍ଧ ମରାଠୀ ନାଟ୍ୟକାର ଶ୍ରୀ ବିଜୟ ତେନ୍ଦୁଲକରଙ୍କ ଏହି ନାଟକ "ସନ୍ତାତା; କୋର୍ଟ ଚାଲୁ ଆହେ" (ଚୁପ୍ ! କୋର୍ଟ ଚାଲିଛି) ୧୯୭୦ରେ ଭାରତୀୟ ନାଟ୍ୟ ସଂଘ ଦ୍ୱାରା ସେ ବର୍ଷର ଶ୍ରେଷ୍ଠ ନାଟକ ଭାବେ କମଳାଦେବୀ ଚଟ୍ଟୋପାଧ୍ୟାୟ ପୁରସ୍କାର ଲାଭ କରିବା ପରେ ଭାରତୀୟ ନାଟ୍ୟସଂଘ ପକ୍ଷରୁ ସବୁ ଆଞ୍ଚଳିକ ଭାଷାରେ ତାହା ଅନୁବାଦ ଓ ମଞ୍ଚସ୍ଥ କରାଯିବା ବ୍ୟବସ୍ଥା ହୋଇଥିଲା । ତଦନୁଯାୟୀ ଭାରତୀୟ ନାଟ୍ୟସଂଘ ପକ୍ଷରୁ ଉତ୍କଳ ନାଟ୍ୟସଂଘ ମୋ ଉପରେ ଏହାର ଅନୁବାଦ ଦାୟିତ୍ୱ ଦେଇଥିଲେ ଓ ମୋଠାରୁ ଅନୁବାଦ କରାଇନେଇ ସେ ବର୍ଷ ଅକ୍ଟୋବର ମାସରେ ଏସୀୟ ଥିଏଟର ଦିବସ ଅବସରରେ କଟକର କଳାଶ୍ରୀ ମଞ୍ଚରେ ମଞ୍ଚସ୍ଥ କରାଇଥିଲେ । ଏହି ଅଭିନୟ ତିନଦିନ ଧରି ଚାଲି ବିଶେଷ ଲୋକପ୍ରିୟ ହୋଇ ପାରିଥିଲା । ଏହାର କେତେ ବର୍ଷ ପରେ ଭୁବନେଶ୍ୱର ସଙ୍ଗ୍ ଏଣ୍ଡ ଡ୍ରାମା ଡ଼ିଭିଜନ୍ ଓ୍ୱେଲଫେୟାର ଏସୋସିଏସନ ରବୀନ୍ଦ୍ର ମଣ୍ଡପରେ ଏହା ମଞ୍ଚସ୍ଥ କରାଇଥିଲେ ଓ ପରେ କଟକର ଶିଳ୍ପୀସଂସ୍ଥା ପେଶାଦାର ଭିତ୍ତିରେ ଏହାକୁ ନିୟମିତ ବହୁ ରାତିଧରି ଜନତା ରଙ୍ଗମଞ୍ଚରେ ପରିବେଷଣ କଲେ । ଏହିସବୁ ଅଭିନୟ ବେଳେ ନାଟକଟି ବହୁ ଦର୍ଶକଙ୍କ ପ୍ରଶଂସା ଲାଭ କରିଛି ।

ନାଟକଟି ୧୯୭୦ର ଶ୍ରେଷ୍ଠନାଟକ ଭାବେ ପୁରସ୍କୃତ ହେବା ଓ ବିଭିନ୍ନ ସ୍ଥାନରେ ଏହାର ଅଭିନୟ ଏତେ ଲୋକପ୍ରିୟ ହେବାର କାରଣ କଅଣ ? ଖାଲି ସେତିକି ନୁହେଁ, ଶ୍ରୀ ସତ୍ୟଦେବ ଦୁବେ ଏହି ନାଟକର କଥାବସ୍ତୁ ଆଧାରରେ ଏକ ଉନ୍ନତ ଚଳଚ୍ଚିତ୍ର ମଧ୍ୟ ପ୍ରସ୍ତୁତ କରିଛନ୍ତି, ଯାହାକ ରାଷ୍ଟ୍ରପତି ପୁରସ୍କାର ପାଇଛି ।

ଏ ନାଟକଟି ଅନୁବାଦ କରିବା ବେଳେ ମୁଁ, ନିଜେ ଜଣେ ନାଟ୍ୟକାର ଓ ନାଟ୍ୟସମାଲୋଚକ ଭାବେ ଅନୁଭବ କରିଛି ଯେ ଏହା ନିଶ୍ଚିତ ଭାବରେ ଭାରତର ନାଟ୍ୟ ଜଗତରେ ଏକ ବଳିଷ୍ଠ କୃତି । ମଣିଷ ଚରିତ୍ର ଓ ପ୍ରକୃତିକୁ ଏଥିରେ ସୂକ୍ଷ୍ମ ଅନ୍ତର୍ଦୃଷ୍ଟିର ସହିତ ଯେପରି ଭାବରେ ବ୍ୟବଚ୍ଛେଦ କରାଯାଇଛି ଏବଂ ତତ୍‌ସହିତ ଆଧୁନିକ ରଙ୍ଗମଞ୍ଚ ଉପଯୋଗୀ ବିଭିନ୍ନ ନାଟ୍ୟବିଭାବର ଯେପରି ସୁଦକ୍ଷ ଗ୍ରନ୍ଥନା ଏଥିରେ ହୋଇଛି, ତାହା ଯଥାର୍ଥରେ ଏକ ଶକ୍ତିଶାଳୀ ଲେଖମାର ପରିଚୟ ଦିଏ ।

ଏ ସମ୍ପର୍କରେ ମୁଁ ଆଉ ଅଧିକ କିଛି କହିବା ନିଷ୍ପ୍ରୟୋଜନ । କାରଣ ନାଟକଟି ପଢିଲେ ସମସ୍ତେ ଏଥିର ମହତ୍ତ୍ୱ ନିଶ୍ଚୟ ହୃଦୟଙ୍ଗମ କରିବେ ।

ଏ ନାଟକର ଓଡ଼ିଆ ଅନୁବାଦ ପ୍ରକାଶ ପାଇଁ ସଦୟ ଅନୁମତି ଦେଇଥିବାରୁ ଶ୍ରୀ ବିଜୟ ତେନ୍ଦୁଲକରଙ୍କୁ ଏବଂ ବହିଟି ପ୍ରକାଶ କରିଥିବାରୁ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀକୁ ମୁଁ ଧନ୍ୟବାଦ ଜଣାଉଛି । ଏହି ଅବସରରେ ଉତ୍କଳ ନାଟ୍ୟ ସଂଘକୁ ଏବଂ ଓଡ଼ିଆ ଅନୁବାଦ ଅଭିନୟ କରିଥିବା ବିଭିନ୍ନ ସଂସ୍ଥାକୁ ମଧ୍ୟ ସାଧୁବାଦ ଦେଉଛି ।

ମୂଳ ମରାଠୀ ଭାଷା ସହିତ ମୁଁ ପରିଚିତ ନୁହେଁ । ତେଣୁ ହିନ୍ଦୀ ଓ ଇଂରେଜୀ ଭାଷାରୁ ନାଟକଟି ଅନୁବାଦ କରିବାକୁ ପଡ଼ିଛି । ଅନୁବାଦରେ କେତେକ ସ୍ଥାନରେ ମୂଳ ଲେଖାର ସ୍ୱାଦ ହୁଏତ ରକ୍ଷା ନଥାଇ ପାରେ । ସେଥିପାଇଁ ମୁଁ ସୁଧୀ ପାଠକମାନଙ୍କ ନିକଟରେ କ୍ଷମା ପ୍ରାର୍ଥୀ ।

ପ୍ରଫୁଲ୍ଲଚନ୍ଦ୍ର ପଟ୍ଟନାୟକ

୨୫ । ୨ । ୭୮

# ପ୍ରଥମ ଅଙ୍କ

[ଆଲୁଅ ଜଳିଲାବେଳକୁ ଦେଖାଗଲା ଏକ ଜନଶୂନ୍ୟ ବଡ଼ ପ୍ରକୋଷ୍ଠ । ପ୍ରକୋଷ୍ଠର ଦୁଇଟି ଦ୍ୱାର, ଗୋଟିଏ ବାହାରୁ ଆସିବା ପାଇଁ, ଏବଂ ଅନ୍ୟଟି ପାଖ ରୁମ୍‌କୁ ଯିବା ପାଇଁ । ପ୍ରକୋଷ୍ଠର ଗୋଟିଏ କାନ୍ଥ ବାଁପଟ ୱିଙ୍ଗ୍ ଭିତରକୁ ଚାଲି ଯାଇଥିବା ଜଣା ପଡ଼ୁଛି । ପ୍ରକୋଷ୍ଠ ଗୋଟିଏ ପ୍ଲାଟଫର୍ମ, ଗୋଟିଏ ଦୁଇଟି କାଠ ଚଉକି, ଗୋଟିଏ ପୁରୁଣା ବକ୍‌ସ, ଗୋଟିଏ ଷ୍ଟୁଲ ଏବଂ ଅସ୍ତବ୍ୟସ୍ତ ହୋଇ ପଡ଼ିଥିବା ଅନ୍ୟ କେତେକ ଜିନିଷ । କାନ୍ଥରେ ଅଚଳ ଘଣ୍ଟା ଓ ଜାତୀୟ ନେତାମାନଙ୍କର କେତୋଟି ପୁରୁଣା ପ୍ରତିକୃତି । ଗୋଟିଏ କାଠ ପଟାରେ ଦାତାମାନଙ୍କର ନାମ ତାଲିକା । କବାଟରେ ଟଙ୍ଗା ହୋଇଚି ଗଣେଶ ଚିତ୍ର । କବାଟ ବନ୍ଦ ।

ବାହାରେ ପଦ ଶବ୍ଦ—କେହି ଜଣେ ଦୁଆର ଖୋଲିବା, ଜଣେ ଲୋକ ପଶି ଆସିବା ଏବଂ ଚାରିଆଡ଼କୁ ଏପରି ଦୃଷ୍ଟିରେ ଦେଖିବା ଯେପରିକି ସେ

ପ୍ରଥମଥର ପାଇଁ ଏ ପ୍ରକୋଷ୍ଠକୁ ଆସିଛୁ । ଏ ଲୋକର ନାମ ସାମନ୍ତ । ତା' ହାତରେ ଡାଲା ଓ ଶୁଦ୍ଧ, ସବୁଜ କନାରେ ଢାଙ୍କା ଏକ ଶୁଆ କଣ୍ଢେଇ ଓ ଗୋଟିଏ ବନ୍ଧା । ]

ସାମନ୍ତ : (ଗୃହଆଡ଼କୁ ଚାହିଁ) ହଁ, ଏଇଠି । ଆସନ୍ତୁ, ଏଇ ସେଇ ଘର । ଆଜ ପୋଗ୍ରାମ ଥିବାରୁ ସକାଳୁ ଘରଟା ପରିଷ୍କାର କରି ଦିଆ ଯାଇଛି ।

[ତାଙ୍କ ପରେ ପରେ ମିସ୍ ବେଣୀରେ ପ୍ରବେଶ କରି ଦୁଆର ମୁହଁରେ ଠିଆ ହୋଇଯାଇଛନ୍ତି, ତାଙ୍କର ଗୋଟିଏ ଆଙ୍ଗୁଠି ସେ ଓଠରେ ଚାପି ଧରିଛନ୍ତି, ଅନ୍ୟ ହାତରେ ସେ ଗୋଟାଏ ବଡ଼ ବାସ୍କେଟ ଓ ଗୋଟିଏ ଭେନିଟି ବ୍ୟାଗ ଧରିଛନ୍ତି]

ସାମନ୍ତ : କଣ ହୋଇଛି ? ଦୁଆର ଖୋଲୁ ଖୋଲୁ ଆଙ୍ଗୁଠି ଚାପିହୋଇ ଗଲାନା ? ଏ ପୁରୁଣା ଛିଟିକିନ୍‌ଗୁଡ଼ାକ ସେମିତି । ସେ ଗୁଡ଼ାକ ସିଧା ଖୋଲେନି । ଆଉ ତାହା ପୂରା ଯଦି ଖୋଲା ହୋଇନଥିବ ନାଁ, ତାହେଲେ ଭିତରକୁ ଆସି କବାଟ ବନ୍ଦ କଲେ, ବାହାରୁ ଆପେ ଆପେ ପଡ଼ିଯିବ, ତମେ ଏଣେ ବସିଥା ଭିତରେ ବନ୍ଦହୋଇ । ହଉ, ଆଙ୍ଗୁଠି ଭଲ କରି ଚୂଷିମି ନଅନ୍ତୁ । ଆରାମ ଲାଗିବ । ଥରେ ଏ ଛିଟିକିନ୍‌ରେ ମୋ ଡାହାଣ ହାତର ଏ ଆଙ୍ଗୁଠି ଚାପି ହୋଇ ଯାଇଥିଲା । ପାଞ୍ଚଦିନ ପର୍ଯ୍ୟନ୍ତ ଆଙ୍ଗୁଠିଟା ଫୁଲି ରହିଲା ଆଉ ଭାରି କଷ୍ଟ ହେଲା । ସେ ପାଞ୍ଚଦିନ ଆଉ ଚାରୋଟି ଆଙ୍ଗୁଠିରେଇ ମୋତେ ସବୁ କାମ ଚଳେଇବାକୁ ପଡ଼ିଲା ।

ମିସ୍ ବେଣାରେ : ଓଃ (ସାମନ୍ତଙ୍କୁ) ନାଁ ନାଁ କିଛି ହୋଇନି, ସେ କିଛି ନୁହେଁ, ଏ କେବଳ ମୋର ଗୋଟାଏ ଅଭ୍ୟାସ। ଆଜି ମୋତେ ବେଶ୍‌ଭଲ ଲାଗୁଛି । ସମସ୍ତଙ୍କ ସହିତ ମୁଁ ଷ୍ଟେସନରେ ଗାଡ଼ିରୁ ଓହ୍ଲାଇଲି । ତାପରେ ହଠାତ୍ ବହୁଦିନ ପରେ, ମତେ ସବୁ ବଡ଼ ଚମତ୍କାର ଲାଗିଲା ।

ସାମନ୍ତ : କାହିଁକି ?

ମିସ୍ ବେଣାରେ : କେଜାଣି କାହିଁକି। ଆଉ ତା' ଛଡ଼ା ତମ ସାଙ୍ଗରେ ଏଠାକୁ ଆସିବାବେଳେ ଆହୁରି ବେଶି ଖୁସି ଲାଗିଲା। ଆଉ ସମସ୍ତେ ପଛରେ ପଡ଼ି ଯାଇଛନ୍ତି । କି ମଜା ! ଆମେ କେତେ ଶୀଘ୍ର ପହଞ୍ଚି ଗଲେ, ନୁହେଁ ?

ସାମନ୍ତ : ହଁ, ବେଶ ଜଲଦି, ଏତେ ଶୀଘ୍ର ଚାଲିବା ଅଭ୍ୟାସ ମୋର ନାହିଁ । କିନ୍ତୁ ଆପଣ ବେଶ୍ ଜୋର ଚାଲି ପାରୁଛନ୍ତି ।

ବେଣାରେ : ସବୁବେଳେ ନୁହେଁ; କିନ୍ତୁ ଆଜି। ଆଜି କେତେ ଜୋରରେ ମୁଁ ଚାଲିଲି ! ମନେ ହେଲା ସମସ୍ତଙ୍କୁ ପଛରେ ପକାଇ ଦେଇ ମୁଁ ତମ ସହିତ ଆଗେଇ ଚାଲିବି 'ଦୂରକୁ – ବହୁତ ଦୂରକୁ ।

ସାମନ୍ତ : (ଥତମତ ହୋଇ) ମୋ ସହିତ ?

ବେଣାରେ : ୟେସ୍ । ତମକୁ ମତେ ବେଶ ଭଲ ଲାଗିଛି ।

ସାମନ୍ତ : (ଲଜ୍ଜା ଓ ସଙ୍କୋଚରେ) ଏଁ ମାନେ ନା – ନା— ମୁଁ …

ବେଣାରେ : ତମେ ବେଶ୍ ଭଲ, ତମକୁ ଆଉ ଗୋଟିଏ କଥା କହିବି ?

ତମେ ଅତି ନିଷ୍ପାପ ଓ ପବିତ୍ର ।

ସାମନ୍ତ : (ଅବିଶ୍ୱାସରେ) ମୁଁ ?

ବେଣାରେ : ହିଁ, ଆଜ ଏ ହଲ୍ ମଧ୍ୟ । ଏଇଟା ମୋର ବେଶ୍ ପସନ୍ଦ ହୋଇଛି ।

[ଘୁରଆଡ଼େ ବୁଲାବା ।]

ସାମନ୍ତ : ଏ' ହଲ୍ ବ ? ଏଇଟାତ ଅତି ପୁରୁଣା ଘରଟାଏ । ଗାଁରେ ଯେତେବେଳେ ଯାହା ପ୍ରୋଗ୍ରାମ ବା ଉତ୍ସବ ହୁଏ, ଏଇଠାରେ କରାଯାଏ । କେବଳ ଉତ୍ସବ ପାଇଁ ଏ ଘର ଲାଗିଲେ ଚଳେ । ସଭା ସମିତି, ଭାଷଣ ସମ୍ବର୍ଦ୍ଧନା, ଭୋଜଭାତ, ବାହାଘର ପ୍ରଭୃତି ସବୁ ପ୍ରକାର ଉତ୍ସବ। ଆଉ ତା'ଛଡ଼ା ଏଠି ଗାଁଲୋ ସ୍ତ୍ରୀ ଲୋକଙ୍କ ଭଜନମଣ୍ଡଳୀ । ଉପରଓଳା ଏଠ ସେମାନେ ଭଜନ ଅଭ୍ୟାସ କରନ୍ତି । ଆଜ ରାତିରେ ପ୍ରୋଗ୍ରାମ ଅଛି ବୋଲି ତାଙ୍କ ଭଜନ ଅଭ୍ୟାସ ବନ୍ଦ ରହିଛି । ଯେଉଁଦିନ ରାତିରେ ଏଠି କିଛି ପ୍ରୋଗ୍ରାମ ଥିବ, ସେଦିନ ତାଙ୍କର ଭଜନମଣ୍ଡଳୀର ଛୁଟି । ନ ହେଲେ ସେମାନେ ରାତିର ପ୍ରୋଗ୍ରାମ ଦେଖିବାକୁ ଘରର କାମଦାମ ଶୀଘ୍ର ସାରିବେ କେମିତି ?

ବେଣାରେ : (ସତର୍କଭାବେ) ତମର ସ୍ତ୍ରୀ ବୋଧହୁଏ ଏ ଭଜନମଣ୍ଡଳୀରେ ଥାଆନ୍ତି ?

ସାମନ୍ତ : ଭୁଲ୍ କଲେ, ଭୁଲ କଲେ, ସ୍ତ୍ରୀ ନୁହନ୍ତି ଭାଉଜ । ମୋର ସ୍ତ୍ରୀ କେହି ନାହାନ୍ତି ।

ବେଣାରେ : (ତାଙ୍କ ହାତର କଣ୍ଢେଇ ଶୁଆକୁ ଦେଖାଇ) ତା' ହେଲେ ଏଇଟା କାହାପାଇଁ ?

ସାମନ୍ତ : (ହସି) ଏଇଟା, ଏଇଟା ମୋ ପୁତୁରାପାଇଁ, ବଡ଼ ମଉଜିଆ ପିଲାଟାଏ । ଆପଣଙ୍କୁ ଏଇଟା ପସନ୍ଦ ଲାଗୁଛି ?

ବେଣାରେ : ହଁ ।

ସାମନ୍ତ : ମୁଁ ଆତୁରର ବାହାଚୁଡ଼ା ହୋଇନାହିଁ । ନା, ସେମିତି କିଛି ବିଶେଷ କାରଣ ନାହିଁ । ସଂସାର ଚଳେଇବାକୁ ମୋର ରୋଜଗାର ବେଶ୍ । ହେଲେ ବାହା ହୋଇ ନାହିଁ । ଆପଣ ଜାଣିଚନ୍ତି—କିଛିଦିନ ତଳେ ଏଠି ମ୍ୟାଜିକ ସୋ ହୋଇଥିଲା, ମୋହନ ବିଦ୍ୟା—ହଟଚମଟ୍ ।

ବେଣାରେ : ସତେ ! ତମେ ଦେଖିଥିଲ ?

ସାମନ୍ତ : କୌଣସି ପ୍ରୋଗ୍ରାମ ମୁଁ ନଦେଖି ଛାଡ଼େ ନାହିଁ । ଏଠି ମନ ଭୁଲେଇବାକୁ ଆଉ କଣ ବା ଅଛି ?

ବେଣାରେ : ତା ସତ । (ପାଖକୁ ଯାଇ କଅଁଳ ସ୍ୱରରେ) ତମେ ଖୁବ୍ ପାଖରୁ ମ୍ୟାଜିକ୍ ଦେଖିଛ ?

ସାମନ୍ତ : ହଁ, ମାନେ ଏକଦମ ପାଖରୁ ନୁହେଁ, ତେବେ ବେଶ ପାଖରୁ । କାହିଁକି ?

ବେଣାରେ : (ଆତୁରର ପାଖକୁ ଲାଗି) ଆଚ୍ଛା, ଏଇ ଯେ, ଜିଭକାଟି ପୁଣି ଯୋଡ଼ନ୍ତି—ତା' ସେମାନେ କିପରି କରନ୍ତି ?

ସାମନ୍ତ : (ଟିକିଏ ଦୂରେଇ ଯାଇ) ଜିଭ-ମାନେ ଏଇ ଜିଭକଟା ? —ତା କହିବା ଅବଶ୍ୟ କଷ୍ଟ ।

ବେଣାରେ : ତଥାପି କୁହ ।

ସାମନ୍ତ : ଏଇ । କିନ୍ତୁ··· (ବେଣାରେ ପୁଣି ତା' ପାଖକୁ ଲାଗି ଆସିବା—ସାମନ୍ତ ଟିକିଏ ଘୁଞ୍ଚିଯିବା) ଏଇ ଏମିତି । ମାନେ ମୁଁ ଚେଷ୍ଟା କରିବ ଦେଖାଇବାକୁ । ଅବଶ୍ୟ ହୋଇ ନପାରେ । ହେଇଟି, ଏଇଟା ମୋ ଜିଭ—

(ସେ ତା ଜିଭ ଦେଖାଇବା)

ବେଣାରେ : ଦେଖେଁ । (ଆତୁରର ନିକଟକୁ ଲାଗିଆସିବା, ଗୋଟିଏ ଦୁଇଟି ମୁହୂର୍ତ୍ତ ପାଇଁ ଏଇ ନିକଟତ୍ୱ ସେ ଅନୁଭବ କରିଥିବା, କିନ୍ତୁ ସାମନ୍ତର ଏଥିପ୍ରତି ଭ୍ରୂକ୍ଷେପ ନଥାଏ)

ସାମନ୍ତ : (ଏକାଗ୍ର ଭାବରେ) ଏଇଟା ମୋ ଜଭ । ହୋଇ କଟିଗଲା । ତା'ପରେ କଣ ? ରକ୍ତ ବାହାରିବ । କିନ୍ତୁ ରକ୍ତ ବାହାରୁ ନାହିଁ । ରକ୍ତ କାହିଁକି ବାହାରୁ ନାହିଁ ? ନିଶ୍ଚୟ କିଛି ମୋହିନୀ ବିଦ୍ୟା ତା ଭିତରେ ରହିଛି । ସେଇଥି ପାଇଁ ରକ୍ତ ବାହାରୁ ନାହିଁ । ଆଉ କିଛି ଲାଗୁ ନାହିଁ । ଟିକିଏ ମଧ୍ୟ ଦରଜ ନାହିଁ । ତା' ହେଲେ—

[ତାର ଏହି ସରଳତାର ପ୍ରତିକ୍ରିୟା ସ୍ୱରୂପ କିମ୍ବା ଅନ୍ୟ କୌଣସି କାରଣରୁ ମିସ୍ ବେଣାରେ ଟିକିଏ ଦୂରେଇ ଯାଇଛନ୍ତି]

ବେଣାରେ : ସେମାନେ ଏଯାଏଁ ପହଞ୍ଚିଲେ ନାହିଁ କାହିଁକି ? ଢିଲା ଢିଲା ଚାଲୁଥିବେ । ଲୋକେ ଫୁର୍ତ୍ତି ଫୁର୍ତ୍ତି କାମ କରିବା ଦରକାର ।

ସାମନ୍ତ : ହଁ । ଏଇ ଯଉ କଥା କହୁଥିଲି, ମୋହିନୀ ବିଦ୍ୟା ।

ବେଣାରେ : ସ୍କୁଲରେ ପ୍ରଥମଘଣ୍ଟା ବାଜୁ ନବାଜୁ ମୋପାଦ ସ୍କୁଲ ଦୁଆର ମୁହଁରେ ଠିଆ ହୋଇଥିବ । ପଙ୍କ୍‌ଚୁଆଲିଟି (Punctuality) ବିଷୟରେ ଗଲା ଆଠ ବର୍ଷ ଭିତରେ କାହାଠୁ ଥରେ ମଧ୍ୟ ପଦେ ଶୁଣିବାକୁ ମିଳିନି । ପାଠ ପଢ଼େଇବା ବିଷୟରେ ବି । ମୋ ପାଠ କେବେ ପଛରେ ପଡ଼ିନାହିଁ । ଖାତା ସଂଶୋଧନ ମଧ୍ୟ ଏକଦମ ଠିକ୍ ସମୟରେ, ପଦେ କିଛି କହିବାକୁ କାହାକୁ କେବେ ସୁଯୋଗ ଦେଇନାହିଁ ।

ସାମନ୍ତ : ଆପଣ ଜଣେ ମାଷ୍ଟ୍ରାଣୀ ?

ବେଣାରେ : ନାଁ । ମୁଁ ଟିଚର, ମୁଁ କଣ ମାଷ୍ଟ୍ରାଣୀ ଭଳି ଦେଖା ଯାଉଛି ?

ସାମନ୍ତ : ନାଁ ନାଁ, ସେ କଥା ନୁହେଁ ଯେ, ମୋ କହିବା ମତଲବ ହେଉଛି—

ବେଣାରେ : ତମେ ଯହିଁ ବୁଝୁଚ, ସେମିତି ମଧ୍ୟ କହିପାର ।

ସାମନ୍ତ : ନାଁ, ମୁଁ ସେମିତି କହିନାହିଁ । ମାଷ୍ଟ୍ରାଣୀ, ମାନେ— ଯେଉଁମାନେ ପିଲଙ୍କୁ ପଢ଼ାନ୍ତି—ସେଇ ଭାବରେ ହିଁ ମୁଁ କହିଥିଲି ।

ବେଣାରେ : ପିଲାମାନେ ବଡ଼ଙ୍କ ଅପେକ୍ଷା ବେଶ୍ ଭଲ, ଅନ୍ତତଃ ସବ୍‌ଜାନ୍‌ତା ହେବାର ଅନ୍ଧ ଅହଙ୍କାର ତାଙ୍କର ନଥାଏ । ବାଜେ ଖିଆଲ ତାଙ୍କ ମୁଣ୍ଡରେ ନଥାଏ । ସେମାନେ ତୁମକୁ ଆଘାତ ଦେଇ ଖୁନ୍ ନିକାଳିବାପରେ ଖାରୁଙ୍କପରି ପଳାଇଯାନ୍ତି ନାହିଁ । ଦୟାକରି ସେ ଝରକାଟା ଖୋଲିଦେଲ, ବଡ଼ ଗରମ ଲାଗୁଚି ।

[ସାମନ୍ତ ଝରକା ଖୋଲିବା, ବେଣାରେ ଦୀର୍ଘଶ୍ୱାସ ନେଲେ]

ହାଁ, ଏବେ ଟିକିଏ ଭଲ ଲାଗୁଚି । ନାଁ, ନାଁ, ବେଶ ଭଲ ଲାଗୁଚି ।

[ଘରର ବୃତ୍ତଆଡ଼େ ପଦଚାରଣା କରିବାକୁ ଲାଗିଲେ]

ସାମନ୍ତ : ଆଚ୍ଛା ସେ ଯାଦୁବିଦ୍ୟା କଥା ପୂରା କରିଦେବ ? ସେଇ ଯେ ଜାଭକଟା---ମୋହିନୀ ବିଦ୍ୟା, ହେଇଟି ଜାଭ,

(ଜାଭ ଦେଖାଇବା ) ହେଇ କଟା ହେଲା ।

ବେଣାରେ : ନାଁ, ଏବେ ଥାଉ ।

ସାମନ୍ତ : ଠିକ୍ ଅଛି—ଠିକ୍ ଅଛି ।

[ହଠାତ୍ ସେ ଏକ ଚୌକୀ ଆଣି ମିସ୍ ବେଣାରେ ପାଖରେ ରଖି]

ଆପଣ ଏମିତି ଘୂରି ବୁଲୁଛନ୍ତି କାହିଁକି ? ଟିକିଏ ବସିଯାନ୍ତୁ । ନହେଲେ ଗୋଡ଼ ବିନ୍ଧିବ ।

ବେଣାରେ : ସ୍କୁଲରେ ଠିଆ ଠିଆ ପାଠ ପଢ଼େଇବା ମୋର ଅଭ୍ୟାସ । କ୍ଲାସ୍‌ରେ ମୁଁ କେବେ ବସେ ନାହିଁ । ସେଥିପାଇଁ ସାରା କ୍ଲାସ ଉପରେ ମୁଁ ନଜର ରଖିପାରେ । କୌଣସି ପିଲା କିଛି ଦୁଷ୍ଟାମୀ କରିପାରେ ନାହିଁ । ସବୁପିଲା ମୋତେ ଡରନ୍ତି । ସେମାନେ ମୋତେ ବେଶ ଖାତିର କରନ୍ତି, ଶ୍ରଦ୍ଧା ମଧ୍ୟ କରନ୍ତି । ମୋ ପାଇଁ ଯାହାକିଛି କରିବାକୁ ସେମାନେ ପ୍ରସ୍ତୁତ । କାରଣ ତାଙ୍କ ପଢ଼ା ପାଇଁ, ମୁଁ ମୋର ଶେଷ ରକ୍ତବିନ୍ଦୁ ଢାଳି ଦେଇଥାଏ । (ସ୍ୱରବଦଳାଇ) ସେଇଥିପାଇଁ ଅନେକ ମତେ ଇର୍ଷା କରନ୍ତି । ବିଶେଷ କରି ମାଷ୍ଟ୍ରାଣୀମାନେ···ଆଉ ସ୍କୁଲର ଅଧ୍ୟକ୍ଷ । କିନ୍ତୁ ସେମାନେ ମୋର କଣ କରିବେ ? ହଁ, ଏ ଭିତରେ ସେମାନେ କ'ଣ ସବୁ ଚକ୍ରାନ୍ତ ଚଳାଇଛନ୍ତି, କିନ୍ତୁ ମୋ ଟିଚିଙ୍ଗ୍‌ରେ ତ କିଛି ତ୍ରୁଟି ନାହିଁ । ଏକଦମ୍ ପରଫେକ୍ଟ । ସେଥିରେ ମୁଁ ମୋର ସମସ୍ତ ଜୀବନ ଉତ୍ସର୍ଗ କରି ଦେଇଛି । ମୋର ଲହୁଝାଳ ସବୁ ଏକାଠି କରି ଦେଇଛି । ହଁ, କେବଳ ଗୋଟାଏ ଅଭିଯୋଗ ମୋ ବିରୁଦ୍ଧରେ ବାହାରିଛି, ତା'ବୋଲି ସେମାନେ କଣ କରିବେ ? ମୋତେ ବାହାର କରି ଦିଅନ୍ତୁ— ମୁଁ ତ କାହାରି କ୍ଷତି କରିନାହିଁ ··· କାହାର ବି ନୁହେଁ । ଯଦି କାହାର କ୍ଷତି କରିଥାଏ, ତା ହେଲେ ମୋ ନିଜର । କିନ୍ତୁ ସେଇଟା କଣ ଏମିତି ଅପରାଧ ଯେ ମୋତେ ନିକାଲି ଦିଆଯିବ ? ମୁଁ ମୋ ନିଜର କଣ କରିବି, ନ କରିବି, ସେ ବିଷୟରେ ସେମାନେ କହିବାକୁ କିଏ ? ମୋ ଜୀବନ ମୋ ନିଜର । ସୁନ୍ଦରକେଶୀ ପାଇଁ ତା ମୁଁ କାହାକୁ ବିକିଦେଇ ନାହିଁ ! ମୋ ଇଚ୍ଛା

ମୋ ନିଜର । ମୋ ନିଜ ସମ୍ପର୍କରେ, ଏବଂ ମୋ ଜୀବନ ସମ୍ପର୍କରେ ମୋର ଯାହା ଇଚ୍ଛା ତାହା ମୁଁ କରିପାରେ । ନିଜ ନିଷ୍ପତ୍ତି ମୁଁ ନିଜେ କରିବି ।

[ତାଙ୍କ ଅଜାଣତରେ ତାଙ୍କ ହାତ ନିଜ ପେଟ ଉପରେ ବୁଲି ଯାଇଛି । ସାମନ୍ତଙ୍କୁ ଦେଖି ନୀରବ ହୋଇଗଲେ । କ୍ରମେ ସେ ପୁଣି ନିଜକୁ ଆତ୍ମସ୍ଥ କରିନେଲେ । ସାମନ୍ତ ବିବ୍ରତ ବୋଧ କରୁଥାନ୍ତି]

ସାମନ୍ତ : (ଅନନ୍ୟୋପାୟ ହୋଇ) ସେମାନେ କାହିଁକି ଆହୁରି ପହଞ୍ଚିଲେ ନାହିଁ—ମୁଁ ଦେଖି ଆସେ ।

ବେଣାରେ : (ହଠାତ୍) ନା— (ତାପରେ ସ୍ୱାଭାବିକ ଅବସ୍ଥାକୁ ଆସି) ମତେ ଏକୁଟିଆ ରହିବାକୁ ଡର ମାଡ଼ୁଛି ।

ସାମନ୍ତ : ତା'ହାଲେ ଯିବିନାହିଁ ? ଆପଣଙ୍କ ଦେହ ଭଲ ନାହିଁ ?

ବେଣାରେ : (ହଠାତ୍ ସାହାସ ବାନ୍ଧି) ନାଁ ମୋତେ କିଛି ହୋଇନି । I am fine.

[ହଠାତ୍ ତାଳିବଜାଇ ଏକ ଇଂରେଜି ସଙ୍ଗୀତ ଗାଇ ଉଠିଲେ]

**Song**

I have got a sweet heart.
Who carries all my books.
He plays in my doll's house,
He says, he likes my looks.
I'll tell you a secret,
He wants to marry me.
But mummy says I am too little.
To have such thoughts in me.

( ଗୀତ ଛାଡ଼) ଆଚ୍ଛା, ତମେ ଜାଣ ଆମେ ଆଜ କଅଣ କରିବାକୁ ଯାଉଛୁ ? ତମ ନାଁ କଅଣ ?

ସାମନ୍ତ : ସାମନ୍ତ ।

ବେଣାରେ : ବେଶ୍ !

ସାମନ୍ତ : ମୁଁ ଜାଣିଚ ଆପଣମାନେ କାହିଁକି ଆସିଛନ୍ତି । ମଦ୍ଧର ପାଖରେ ଗୋଟାଏ ନୋଟିସ୍ ଦିଆହୋଇଚି ଯେ ବମ୍ବେ ସୋନାର୍— ମୋଣ୍ଡ—ବହ୍ନିପ୍ରଗତିଶୀଳ ସଂଘର ନାଟକାସ୍ଥ ଅଦାଲତ । ଆଚ୍ଛା ଅଦାଲତ କଣ ? ହଁ— ଅଦାଲତ—ସତ୍ତ ଠିକ୍ ଆଠଟାରେ ।

ବେଣାରେ : କିନ୍ତୁ ଏଥିର ମତଲବ କଣ ତୁମେ ଜାଣିଛ ?

ସାମନ୍ତ : ତା' ମୁଁ ଜାଣେ ନାହିଁ । ହୋଇଥିବ ଅଦାଲତ ବିଷୟରେ କିଛି ।

ବେଣାରେ : ହିଁ, ନକଲି ଅଦାଲତ ।

ସାମନ୍ତ : ସେଥିର ମତଲବ ? ଅଦାଲତ ବିଷୟରେ ଏକ ପ୍ରହସନ ?

ବେଣାରେ : ଠିକ । ପ୍ରହସନ । କିନ୍ତୁ ସାମନ୍ତ, ଶିକ୍ଷାବିସ୍ତାର ମଧ୍ଯ ଆମ ପୋଗ୍ରାମର ଏକ ମୂଳ ଲକ୍ଷ୍ୟ— ଏକଥା ତମମାନଙ୍କୁ ଆମ ଚେୟାରମ୍ୟାନ କାଶିକର ବାବୁ ଆଜ ବୁଝାଇବେ । କୌଣସି ଖାସ ଲକ୍ଷ୍ୟବିନା କାଶିକର ବାବୁ ଗୋଟିଏ ପାଦ ମଧ୍ଯ ଆଗକୁ ବଢ଼ାନ୍ତି ନାହିଁ । ତା'ଛଡ଼ା ତାଙ୍କ ସାଙ୍ଗରେ ଅଛନ୍ତି ମିସେସ୍ ଝ୍ଲଣା ଦଉଡ଼ି । ଅର୍ଥାତ୍ ତାଙ୍କ ମିସେସ୍ । ଆଦର୍ଶ ଗୃହିଣୀ ବିଲ୍କୁଲ ! ଯାହାଙ୍କ ହାତରେ ଝ୍ଲଣାର ଦଉଡ଼ି —ଠିକ୍ ସେହି ପ୍ରକାରର ଗୃହିଣୀ । ହେଲେ, ମିଷ୍ଟର କାଶୀକର ସମାଜସେବା ଦ୍ଵାରା ଦୁନିଆର ଉଦ୍ଧାର ଭଳି ଖାସ୍ ଲକ୍ଷ୍ୟ ମାନଙ୍କରେ ଏତେ ମସଗୁଲ

ଥାଆନ୍ତି ଯେ, ଏ ବଗୁଲାଙ୍କ ହାତରେ ଝୁଲଣାର ଦଉଡ଼ିଟା ହିଁ ଥାଏ···ଝୁଲଣାଟା ନାହିଁ ।

ସାମନ୍ତ : ତା ମାନେ ?···ତାଙ୍କର ନାହିଁ··· ?

[ହାତରେ ଛୁଆ ଝୁଲାଇବାର ଅଭିନୟ କରିବ।]

ବେଣାରେ : ବାଃ—ତମେ ତ ବେଶ୍ ସମଝ୍‌ଦାର ଲୋକ ! ମିଷ୍ଟର କାଶୀକର ଓ ମିସେସ କାଶୀକର, ତାଙ୍କ ଶୂନ୍ୟଘରେ ତାଙ୍କ ସହାୟ ହେବା ପାଇଁ ଗୋଟିଏ ବାଳକକୁ ପାଖରେ ରଖିଛନ୍ତି । ତାକୁ ପଢ଼ା ଲେଖା ଶିଖାଇଛନ୍ତି, ତା ଦ୍ୱାରା ଘରର ସବୁ କାମ କରାଉଛନ୍ତି—ଖିଆମତ ଏକ ଭୃତ୍ୟକରି ରଖିଛନ୍ତି । ତା'ନାଁ ବାଲୁ ରୋକଡ଼େ । ଆମ ଭିତରେ ଆଉ ଜଣେ ଅଛନ୍ତି ଆଇନ ବିଶେଷଜ୍ଞ— ଆଇନ୍‌ରେ ସେ ଏତେ ଦକ୍ଷ ଯେ ଅତି ହତାଶ ହୋଇ ପଡ଼ିଥିବା ମକ୍କେଲ୍ ମଧ୍ୟ ତାଙ୍କ ପାଖ ମାଡ଼ିବାକୁ ସାହସ କରିବ ନାହିଁ । ସେ ଅଦାଲତର ଓକିଲଙ୍କ ରୁମ୍‌ରେ ଏକୁଟିଆ ବସି ତାଙ୍କର ଆଇନଜ୍ଞାନ ଦ୍ୱାରା ମାଛି ମାରନ୍ତି । ଆଉ ତାଙ୍କ ଘରେ ବି, ସେ ଏକୁଟିଆ ବସି ମାଛି ମାରିବାରେ ଲାଗି ଥାଆନ୍ତି— ଆଜିର ଏ ପ୍ରହସନରେ ତମେ ଦେଖିବ, ସେ ଏକ ବଡ଼ ଓକିଲ ଭାବେ ବାହାରିବେ । ତମେ ନିଜେ ଦେଖିବ ତାଙ୍କ ଓକିଲତି । ଆଉ ଆମ ଭିତରେ ଆଉ ଜଣେ ବି ଅଛନ୍ତି ।

[ମୁହଁରେ ପାଇପ ଧରି ଅଭିନୟ କରି ।]

ସାଇଣ୍ଟିଷ୍ଟ; ସାଇନ୍‌ସରେ ଇଣ୍ଟର ମିଡ଼ିଏଟ୍ ଫେଲ ।

ସାମନ୍ତ : ତା'ହେଲେ ତ ବେଶ ମଜାହେବ ।

ବେଣାରେ : ଜଣେ ଇଣ୍ଟେଲେକ୍‌ଚୁଅଲ ମଧ୍ୟ ଅଛନ୍ତି । ଇଣ୍ଟେଲେକ୍‌ଚୁଆଲ୍ ଅର୍ଥ ଗ୍ରନ୍ଥକୀଟ । ପୋଥି ବିଦ୍ୟା ନେଇ ତାଙ୍କର ବଡ଼ ଗର୍ବ । ହେଲେ ଅସଲ ବାସ୍ତବ ସମସ୍ୟା ବେଳକୁ ଛତ୍ରଭଙ୍ଗ । କେଉଁଠି ଯାଇ ମୁହଁ ଲୁଚାନ୍ତି । ସେ ଆଜ ଆସି ନାହାନ୍ତି । ଆସିବେ ନାହିଁ । ଆସିବାକୁ ସାହସ କରିବେ ନାହିଁ ।

ସାମନ୍ତ : ହେଲେ ଅଦାଲତରେ ମକଦ୍ଦମା କେଉଁ ବିଷୟରେ ?

ବେଣାରେ : ନ୍ୟୁ-କ୍ଲିଅର ୱେପନ୍ (Nucleur weapon) ସମ୍ପର୍କରେ ପ୍ରେସିଡ଼େଣ୍ଟ ଜନସନ୍‌ଙ୍କ ବିରୁଦ୍ଧରେ ମକଦ୍ଦମା ହେବ ।

ସାମନ୍ତ : (ଆଶ୍ଚର୍ଯ୍ୟ ହୋଇ) ବାବାରେ ବାବା ।

ବେଣାରେ : ସୁ ··· ଚୁପ୍ ! ଚୁପ ! ମନେ ହେଉଛି ସମସ୍ତେ ଆସିଗଲେଣି (ହଠାତ୍ କାଣଡେରି) ଶୁଣ । ଏ ଆଡ଼କୁ ଆସି ଏଠି ଲୁଚିଯାଅ—ମୁଁ ବି ଏଠି ଲୁଚୁଛି । ତମେ ଏଠି ଏମିତି ଲୁଚିଯାଅ । ହଁ, ଏବେ ଆସନ୍ତୁ ସେମାନେ ।

[ ଦୁହେଁ କବାଟ ପଛରେ ଲୁଚିଯିବା ଦୁହିଁଙ୍କ ଦେହ ପରସ୍ପର ସ୍ପର୍ଶ କରିଥାଏ ।]

[“ହୁଅର ଇଟ୍ ଇଜ୍, ଶେଷରେ ମିଳିଗଲା ।” କହି କହି ଆଡ଼ଭୋକେଟ ସୁଖାମ୍ବେ, ବଜ୍ଞାନ ସ୍ଥାବ ପୋଙ୍ଗେ, ବାଲୁବେକ୍‌ଡ଼େ ଆସିବା । ସେମାନଙ୍କ ହାତରେ ଦୁଇ ତିନୋଟି ସୁଟ୍‌କେଶ, ଦୁଇଟି ବ୍ୟାଗ୍, ମାଇକ୍ରୋଫୋନର ଏକ ବ୍ୟାଟେଷ୍ଟସେଟ୍, ଏବଂ ଆଉ କେତେକ ଉପକରଣ । ସୁଖାମ୍ବେଙ୍କ ମୁହଁରେ ବଡ଼ି । ପୋଙ୍ଗେଙ୍କ ଓଠରେ ପାଇପ୍ । ବେକଡ଼େର

ଧରଓ୍ୱାନ ବେଶ । ତାଙ୍କ ପଛରେ ଏକ
କୁଲି ଅଦାଲତର ମଞ୍ଚ, ସାକ୍ଷୀ ବାକ୍ସ
ପ୍ରଭୃତିର କାଠସେଟ୍ ନେଇଆସି ପହଞ୍ଚିବା ।
ସେମାନେ ପଶୁ ପଶୁ ମିଧ୍ ବେଣାରେ ଓ
ସାମନ୍ତ ଦ୍ୱାର ପଛରୁ ହଠାତ୍ ଛୁଟିକି
ଆସିବା ଓ ମିସ୍‌ବେଣାରେ ଉଚ୍ଚ କଣ୍ଠରେ
ଚିତ୍କାର କରି ଉଠିବା । ମୁହୂର୍ତ୍ତିକ ପାଇଁ
ସମସ୍ତେ ଚମକି ଉଠିଲେ । ତାପରେ କ୍ରମେ
ନିଜକୁ ସମ୍ଭାଳି ନେଲେ । ବେଣାରେ
ଜୋରରେ ହସୁଥାନ୍ତି । ସାମନ୍ତ ଅବାକ୍
ହୋଇ ଏ ଦୃଶ୍ୟ ଦେଖୁଥାନ୍ତି ।]

ବୋକଡ଼େ : (ଘରେ ଏକ ଜାଗାରେ ଜନଷପଜ ରଖି) ବାଃ-ବାଃ
କ ପାଟି କଲେ ମିସ୍ ବେଣାରେ । ଏସବୁ ଜନଷ ପତ୍ର
ହାତରୁ ଖସି ପଡ଼ଥାଆନ୍ତା ! ମିସେସ୍ କାଶୀକର ଆଉ
ମୋ ଦଫା ରଖନ୍ତେ ନାହିଁ । ଏମିତି ତ ଖାଳଖାରେ
ମୋ ଉପରେ ସେ ଫଣଫଣ । ଯେତେହେଲେ ତାଙ୍କ
ଦପ୍ତରେ ତ ବଞ୍ଚିଛୁ—ଆଉ ପଡ଼ାପଡ଼ି କରିଛୁ !
ଆଜ ମୋତେ ମୋ ପାପର ଫଳ ଭୋଗିବାକୁ ହେଉଛି ।

(ପ୍ରସ୍ଥାନ)

[କୁଲି ତାର ସାମାନ ଉଇଙ୍ଗ୍ ପାଖରେ
ରଖି ଆସିବା ଓ ପୋଙ୍ଗେ ତାକୁ ତାର
ମଜୁରି ଦେବା ପରେ ସେ ଗୁଲିଗଲା]

ପୋଙ୍ଗେ : (ଘରି ପ୍ରେମର ଚଷମା ଉତ୍ତର ଚମ୍ପୀର ଗଳାରେ)
ଓଃ, ଗୋଷ୍...କେଉଁଠି ଅଛି... (କହି କହି ଭିତର
ରୁମ୍‌କୁ ଯିବା – ଗାଧୁଆ ଘ ର ଖୋଜିବାକୁ)

ସୁଖାମ୍ଭେ : (ବଡ଼ ଜୋର କରି ଟାଣି ଟାଣି ଧୂଆଁ ଛାଡ଼ି) 'ଏକ
ନହିଁ ସିମୁନ୍କି ବସି ହୈ ମେରେ ମନମେ'...(ଗୀତ

ଗାଇବା)···ଆଚ୍ଛା ମିସ୍ ବେଣାରେ, ଯାହାପଚ୍ଛେ ଘଟୁ, ଆପଣଙ୍କ ପିଲମୀ ଛାଡ଼ିବାକୁ ପ୍ରସ୍ତୁତ ନୁହନ୍ତି ନା ?

ବେଣାରେ : କାହିଁକି ? ମୁଁ ତ Class ରେ ବେଶ୍ ଗମ୍ଭୀର ରୁହେ । କିନ୍ତୁ ମୁଁ ପଚ୍ଛୁରୁଛି, ମଣିଷ ଯଦି ସବୁବେଳେ ଭାରି ମୁହଁ ନେଇ ବୁଲିବ, ତା'ହେଲେ ବଞ୍ଚିବାର ଅର୍ଥ କଣ ? ଯେମିତି ଏହି ପୋଙ୍ଗେ ! ହସିବାକୁ ହେବ । ଖେଳ ଉଅଁ, ଗୀତ ଗାଅ, ଆଉ ପାରିଲେ ଏବଂ ସୁବିଧା ମିଳିଲେ, କୌଣସି ପ୍ରକାର ସଙ୍କୋଚ ନ ରଖି ନାଚ ମଧ୍ୟ । ବେଶ୍ ଜାଇଁଲି ଭଲ ଜାଇଁବାକୁ ହେବ । ଜୀବନଟା ଚାଲିଗଲେ ପରେ କେହି ଆଉ ଫେରାଇ ଦେବ ? କଣ ସାମନ୍ତ ? ମିଳିବ କେଉଁଠୁ ?

ସାମନ୍ତ : ହଁ, ଆପଣ ଠିକ୍ କହୁଛନ୍ତି । ତୁକାରାମ ମହାରାଜ ମଧ୍ୟ କହୁଛନ୍ତି···ମାନେ···ମୁଁ ଭାବୁଛି, ସେ କହୁଛନ୍ତି···

ବେଣାରେ : ଆରେ ଛାଡ଼ ସେ ତୁକାରାମ ମହାରାଜଙ୍କୁ । ମୁଁ ଯାହା କହୁଛି ଶୁଣ । ମୁଁ ଲୀଲା ବେଣାରେ—ମୋ ଅନୁଭବରୁ କହୁଛି । ଆହେ, ଜୀବନଟା ଆଉ କାହାପାଇଁ ନୁହେଁ ! ଜୀବନଟା ନିଜର । ତା' ହେବା ଉଚିତ । ଜୀବନଟା ମୂଲ୍ୟବାନ ଜିନିଷ···ତାର ପ୍ରତି ମୁହୂର୍ତ୍ତ, ପ୍ରତ୍ୟେକ ଅଣୁ ପରମାଣୁ ମହତ୍ତ୍ୱପୂର୍ଣ୍ଣ ।

ସୁଖାମ୍ଳେ ! (ତାଳିମାରି) ହିଅର··· ହିଅର୍···(ଉତରୁ ପୋଙ୍ଗେ ପହଞ୍ଚିବା)

ବେଣାରେ : ହିଅର ନୁହେଁ···(ସେ ପୋଙ୍ଗେଙ୍କୁ ଦେଖାଇ) ଦେୟାର (ହସ ଚାପିବାକୁ ଚେଷ୍ଟା କରିବା, କିନ୍ତୁ ନ ପାରିବା)

ପୋଙ୍ଗେ : (କିଛି ନ ବୁଝି) କ'ଣ ହେଲା ?

ବେଣାରେ : ପୋଙ୍ଗେ ! ମତେ ସତ କୁହ, ତମେ ଭିତରକୁ ଯାଇଥିଲ କାହିଁକି ? ପୋଗ୍ରାମ ଆଗରୁ ତମେ ଯେଉଁ

ନର୍ଭସନେସ ଫିଲ୍ କରି ସେଇଥିପାଇଁ ଆଗରୁ ସବୁ ବ୍ୟବସ୍ଥା ଦେଖି ନେବାକୁ ନା ? କୁହ କରେକ୍ଟ ?

ସୁଖାମ୍ବେ : ଆପଣ ଯାହା ଇଚ୍ଛା ତାହା କହି ପାରନ୍ତି ମିସ୍ ବେଣାରେ । କିନ୍ତୁ ଆମ ପୋଙ୍ଗେ ଆଦାଲତର ବିଗ୍ରୁବିଲ୍ଡ଼ୁରେ ଉଇଟନେସ୍ (witness) ବକ୍ସରେ ସାଇଣ୍ଟିଷ୍ଟ ଭାବେ ଠିଆ ହେବା ବେଳେ ବେଶ୍ impressive ଦେଖାଯାନ୍ତି । ମୁହଁର ଗାଇଟ୍ ଏବଂ ଆଉ ସବୁ ଆଦବ କାଇଦା ମୋଷ୍ଟ ଇମ୍ପ୍ରେସିଭ୍ । ତାଙ୍କୁ ଦେଖିଲେ କେହି ବିଶ୍ୱାସ କରିବେ ନାହିଁ ଯେ, ସେ ସାଇନ୍ସରେ ଇଣ୍ଟର ମିଡିଏଟ ପରୀକ୍ଷା ଏକେ ଦ୍ୱିତୀୟ ଥର ପାଇଁ ଦେଇଛନ୍ତି, ଆଉ Central ଟେଲିଗ୍ରାଫ ଅଫିସରେ କିରାନି ଅଛନ୍ତି ।

[ରୋକଡ଼େ ଏ କଥା ଶୁଣି ନିଜକୁ ସମ୍ଭାଳି ନ ପାରି ହସି ଉଠିବା]

ପୋଙ୍ଗେ : (ନର୍ଭସ ହୋଇ ରୋକଡ଼େଙ୍କୁ) ଏଇ ରୋକଡେ, ବତିଶ ଦାନ୍ତ ଦେଖାନା । ମିସେସ କାଶୀ କରଙ୍କ ଦପ୍ତରରେ ମୁଁ ପାଠ ପଢ଼ିନି । ଇଣ୍ଟର ମିଡ଼ିଏଟ୍ ଫେଲ୍ ହୋଇଛି ସତ, କିନ୍ତୁ ମୋ ବାପାର ପଇସାରେ ପଢ଼ିଥିଲି । ନନ୍‌ସେନ୍‌ସ ।

ବେଣାରେ : ନନ୍‌ସେନ୍‌ସ । (ପୋଙ୍ଗେଙ୍କ ପରି ହସୁଥିବା) ଗୋଟାଏ କଥା କହିବି ତମମାନଙ୍କୁ । ମୁଁ ପିଲାଦିନେ ଅତି ଚୁପ-ଚୁପିଆ ଥିଲି । ମୁଁ ଖାଲି ଏକୁଟିଆ ବସି ଗୁଡ଼ାଏ କଳ୍ପନା କରି ଯାଉଥାଏ । ମୋ କଳ୍ପନା ମୁଁ କାହାକୁ କହେ ନାହିଁ । ଆଉ କଥା କଥାକେ ମୁଁ ଜୋରରେ କରି କାନ୍ଦି ବସୁଥିଲି ।

ପୋଙ୍ଗେ : ତା ଅର୍ଥ···ଏବେ ଯାହା ହୋଇଛି, ଠିକ୍ ତାର ଓଲଟା

ବେଣାରେ : ଠିକ୍ । ସାମନ୍ତ, ତମେ ଜାଣ ?

ସାମନ୍ତ : (ଚମକି) ମୁଁ—ମାନେ—ମୁଁ—ନାଁ ନା··· ।

ବେଣାରେ : ସ୍କୁଲକୁ ଯେଉଁଦିନ ପ୍ରଥମେ ଗଲି, ମୋର ସବୁ ବହିରେ ବେଶ୍ ସୁନ୍ଦର ମଲାଟ ଦେଇଥିଲି ଏବଂ ବହିର ପ୍ରଥମ ପୃଷ୍ଠାରେ ଫୁଲ ପ୍ରକୃତିର ଚିତ୍ର ଆଙ୍କି ଗୋଟି ଗୋଟି ଅକ୍ଷରରେ ଲେଖିଥିଲି—

The grass is green.
The rose is red.
The book is mine.
Till I am dead.

ଟିଲ ଆଇ ଆମ ଡେଡ୍ । ତା'ପରେ କହିବ କଣ ହେଲା ?

ସାମନ୍ତ : କଅଣ ହେଲା ?

ବେଣାରେ : ସବୁ ବହି ଗୋଟିକ ପରେ ଗୋଟିଏ ଚିରି କୁଆଡ଼େ ଗୁଲି ଗଲାଣି । ଆଉ ମୁଁ ଆହୁରି ରହିଛି । ମୁଁ ଆହୁରି ମରି ନାହିଁ । I am not dead. The grass is still green, the rose is still red, but I am not dead. (ପୁଣି ଜୋରରେ ହସି ଉଠିବା)

ରୋକଡ଼େ : (ହଠାତ୍ ବ୍ୟାଗରୁ ଏକ ନୋଟ୍ ବୁକ୍ ବାହାର କରି ଲେଖିବାକୁ ଆରମ୍ଭ କରିବା) ବାଃ ବେଶ୍ ସୁନ୍ଦର – ଦ ଗ୍ରାସ ଇଜ ଗ୍ରୀନ୍, ଦ ରୋଜ ଇଜ୍ ରେଡ଼ । ତାପରେ ସେ ମଝି ଲାଇନଟା କଣ ମିସ୍ ବେଣାରେ ?

ବେଣାରେ : (ମୁହଁର ହସ ଲିଭି ଯାଇଥାଏ) ରୋକଡ଼େ ! ଏଇଟା ଅତି ଖରାପ ସ୍ୱଭାବ—ମୁଁ ବାରମ୍ବାର କ୍ଲାସରେ ପିଲାଙ୍କୁ ମଧ୍ୟ ଏଇଆ ବୁଝାଏ—ଅଧା ଶୁଣି କରି ଲେଖିବାକୁ ତରବର ହୁଅ ନାହିଁ । ପ୍ରଥମେ ଶୁଣ ମନ ଦେଇ, ତାପରେ ମନେ ମନେ କୁହ, ତାକୁ ତମ ଭିତରର

ରାଜ୍ୟର ପ୍ରତ୍ୟେକଙ୍କୁ ନେଇଯାଅ । ସେଠି ତାହା ସବୁଦିନ ପାଇଁ ରହିଯିବ । ରକ୍ତରେ ମିଶିଯିବା ଦରକାର । ତା'ହେଲେ ଜଗତ୍ ଆଉ କେହି ତାହା ଛଡ଼ାଇ ନେଇ ପାରିବ ନାହିଁ । କେହି ଆଉ ତାହା ଭୁଲାଇ ଦେବନାହିଁ ।

ସାମନ୍ତ : ହଁ, ଆମର ପଣ୍ଡିତ ମହାଶୟ ମଧ୍ୟ ଏହା କହୁଥିଲେ । ରାମଦାସଙ୍କ ଶ୍ଳୋକସବୁ ସେ ଠିକ୍ ଏମିତି ପଢ଼ାଉଥିଲେ । ଅବଶ୍ୟ ସେ ଏ ରକ୍ତ ଫକ୍ତ କଥା ଏମିତି କହି ନଥିଲେ···

ସୁଖାତ୍ମେ : ହଁ, ବେଣାରେ କହି ଚାଲନ୍ତୁ ।

ବେଣାରେ : (ହଠାତ୍ ଅତି ଉଚ୍ଛ୍ୱାସରେ) ମୁଁ ଗୋଟାଏ କାହାଣୀ କହିବି, ପିଲାଏ ବସିଯାଅ । ହଁ ଶୁଣ, ଗୋଟିଏ ବଣରେ ଗୋଟିଏ ଗଧିଆ ଥିଲା ।

ଗୋକଡ଼େ : (ଚକା ପକାଇ ବସିଯାଇ) ହଁ, କହି ଦିଅନ୍ତୁ ମିସ୍ ବେଣାରେ । ଚାଲୁ, ବସିଯାନ୍ତୁ ମିଷ୍ଟର ସୁଖାତ୍ମେ । ବସ ମିଷ୍ଟର ପୋଙ୍ଗେ ।

[ପୋଙ୍ଗେ ବିବ୍ରତ ଭାବେ ବାହାରକୁ ଚାଲିଯିବା ]

ବେଣାରେ : ନା, ଗୋଟିଏ କବିତା ଆବୃତ୍ତି କରିବି ।

(ହଠାତ୍ ଗୁଣୁଗୁଣୁ ହୋଇ ଏକ କବିତା ଆବୃତ୍ତି କରିବା), ନା, ନା, ଗୋଟାଏ ଗୀତ ଗାଉଛି ।

[ସୁଖାତ୍ମେ ଚୌକିରେ ବସିଲେ । ସାମନ୍ତ ଉତ୍ସୁକ ଭାବେ ଚାହିଁଥିବା । ବେଣାରେ ଗୀତ ଗାଇବା ବେଳେ ସମସ୍ତେ ତାଙ୍କ ସହିତ ତାଳ ଦେବାକୁ ଆରମ୍ଭ କରିଦେବା । ସୁଖାତ୍ମେ ତାଳ ବଜାଇବା । ଏ ସମୟରେ

ନାଟ୍ୟକାର କାର୍ତ୍ତିକ ପ୍ରବେଶ କରିବା ।
ମୁହଁରେ ପାନ]

କାର୍ତ୍ତିକ : ଆଃ, ମୁଁ ତା'ହେଲେ ଠିକଣା ଜାଗାରେ ଆସି ପହଞ୍ଚିଗଲି । ଭାବୁଥିଲି କେଉଁଠି ବାଟବଣା ହୋଇଯିବି ବୋଲି । (ସମସ୍ତଙ୍କୁ ଚାହିଁ) କଅଣ ହୋଇଛି ?

ରେକଡ଼େ : ଆଃ, ସବୁ ମାଟି ହୋଇଗଲା ।

ସୁଖାମ୍ନେ : ମିସ୍ ବେଣାରେ ଗୀତ ଗାଉଥିଲେ ।
(ପରିହାସ କଣ୍ଠରେ) କି ସୁନ୍ଦର, କି ମିଠା ଗଳା ।

[ବେଣାରେ ତାଙ୍କୁ ଖଚେଇ ହୋଇ ଜିଭ ଦେଖାଇବା ଏବଂ ହସି ଚାଲିବା— କାର୍ତ୍ତିକ ଚାରିଆଡ଼କୁ ଚାହିଁଥିବା । ରେକଡ଼େ ଠିଆ ହୋଇଯିବା]

ସୁଖାମ୍ନେ : (ଉତ୍କଳ ସ୍ୱରରେ) ଗୋଟାଏ ମିନଟ୍ ମିଷ୍ଟର କାର୍ତ୍ତିକ । ଆପଣଙ୍କ ମନରେ ବର୍ତ୍ତମାନ କି ଭାବନା ଚାଲିଛି କହିଦେବେ ? ଆପଣ ଭାବୁଚନ୍ତି ଏ ହଲଟି ଆପଣଙ୍କ ଇଣ୍ଟିମେଣ୍ଟ ଥିଏଟର, ଅର୍ଥାତ ଅଳ୍ପ ଦର୍ଶକଙ୍କ ପାଇଁ ଲେଖା ଆପଣଙ୍କ ନାଟକ ଯାହାକି ସେମାନଙ୍କ ମୁଣ୍ଡ ଉପରେ ଉପରେ ଉଡ଼ିଯାଏ, ତା'ପାଇଁ ବେଶ ଆଇଡ଼ିଆଲ୍ । ଏକଥା ଠିକ୍ କି ନାହିଁ ? କୁହନ୍ତୁ ।

କାର୍ତ୍ତିକ : (ଶାନ୍ତ ଭାବରେ ପାନ ଚୋବାଇ) ନା, ମୁଁ କଅଣ ଭାବୁଥିଲି କି ଏ ହଲରେ କୋର୍ଟସିନ୍ ହେଲେ, ତା ଆଗରେ ପ୍ରକୃତ କୋର୍ଟ ମଧ୍ୟ ହାର ମାନିଯିବ ।

ବେଣାରେ : ସତେ ? ତା'ହେଲେ ତ ଆମର ପ୍ରହସନ ବେଶ ଜମିବ ଅସଲ ଅଦାଲତ ପରି ।

ରେକଡ଼େ : (ବ୍ୟସ୍ତଭାବେ) ମିସେସ୍ କାଶୀକର ଏ ପର୍ଯ୍ୟନ୍ତ କେଉଁଠି ରହିଲେ ?

କାର୍ତ୍ତିକ : (ପାନ ଚୋବାଉ ଚୋବାଉ) ଆସୁଛନ୍ତି, ବାଟରେ ମିଃ କାଶୀକର ମିସେସ୍‌ଙ୍କ ପାଇଁ ଗୋଟିଏ ଗଜରାହାର କିଣିବାକୁ ଚାହିଁବାରୁ ଦୁହେଁ ଅଟକି ଯାଇଛନ୍ତି । ପାନନେଇ ମୁଁ ଆଗେ ଆଗେ ଚାଲି ଆସିଲି । ସେକଡ଼େ, ମାଇକ୍ ବ୍ୟାଟେରୀ ଠିକ୍ ଅଛି ତ ? ଏସବୁକୁ ଟେଷ୍ଟ କରିନିଅ । ନହେଲେ ଠିକଣା ବେଳକୁ ସବୁ ଗୋଳମାଳ କରି ବସିବ । ଏମିତି ଫଙ୍କ୍‌ସନ ମାନଙ୍କରେ ଶେଷ ମୁହୂର୍ତ୍ତରେ କିଛି ଗଡ଼ବଡ଼ ହେବା ଉଚିତ ନୁହେଁ । ତଥାପି ତା' କେମିତି ହେଲେ ଘଟି ଯାଇଥାଏ । ଗତ ମାସରେ ଆମର ଏକ ସୋ ମଝିରେ ହଠାତ୍ ଫିଉଜ ଉଡ଼ିଗଲା । ମୁଁ ସେତେବେଳେ ଷ୍ଟେଜରେ ଥିଲି । ମୋ ରୋଲ୍ ଅବଶ୍ୟ ବଡ଼ ନଥିଲା । ସେଥିରେ କଅଣ ଅଛି ? ଯେମିତି ହେଉ ମୁଁ ପରିସ୍ଥିତି ସମ୍ଭାଳି ନେଲି ।

ସେକଡ଼େ : ସେଇଟା ଗଣେଶ ପୂଜା ପାଇଁ ଗୋଟାଏ ମାମୁଲି ସୌଖିନ ନାଟକ ଥିଲା ।

କାର୍ତ୍ତିକ : ତଥାପି ମୁଡ୍ ତ ଗୋଳମାଳ ହୋଇଯାଇଥିଲା ।

[ବେଣାରେ ହଠାତ ହାଇ ମାରିବା । କାର୍ତ୍ତିକ ତାଙ୍କ ଆଡ଼କୁ ଅନାଇବା]

ବେଣାରେ : (ଦୁଷ୍ଟାମୀର ସ୍ୱରରେ) ନା, ଆପଣଙ୍କ କଥା ନେଇ ମୁଁ ହାଇ ମାରୁନି ମି. କାର୍ତ୍ତିକ । ପ୍ରତିଦିନ ବହୁତ ସକାଳୁ ମତେ ଉଠିବାକୁ ପଡ଼େ ତ । ତାପରେ ସ୍କୁଲରେ ମର୍ଣ୍ଣିଂ ସେସନ୍ । ପୁଣି ଆଫଟରନୁନ୍ ସେସନ୍ । ସନ୍ଧ୍ୟାରେ ଟିଉସନ । ହେଲେ ମିଷ୍ଟର ଆଉ ମିସେସ୍ କାଶୀକରଙ୍କ ସମ୍ପର୍କରେ ଗୋଟାଏ କଥା କାହା ନଜରକୁ ଆସିଛି ?

ସେକଡ଼େ : (ଉତ୍ସୁକ ଭାବେ) କଅଣ ?

ପୋଙ୍ଗେ : (ବାହାରୁ ଆସି) ଇୟେସ୍, ହ୍ୱାଟ ?

ସୁଖାନେ୍ଦ : ମୁଁ କହୁଛି; ନା, ଥାଉ, ମିଯ୍ ବେଣାରେ ନିଜେ କୁହନ୍ତୁ । Let me see. Come out with ଇଟ୍ ।

ବେଣାରେ : ଆପଣ କଣ ବୁଝି ନାହାନ୍ତି ମିଷ୍ଟର ସୁଖାନେ୍ଦ । ସବୁଜାନତା ଓକିଲ ଢ଼ଙ୍ଗ ଦେଖାନ୍ତୁ ନାହିଁ । ଆମର ମିଷ୍ଟର କାଣୀକର ଅବଶ୍ୟ ଜଣେ ସୋସିଆଲ ଓ୍ୱାର୍କର । ଆଉ ମିସେସ୍ କାଣୀକର, ପଢ଼ାଲେଖା ବେଶି ଜାଣନ୍ତି ନାହିଁ । ଅବଶ୍ୟ ପଢ଼ାଲେଖା ବେଶି ଜାଣିବା ନ ଜାଣିବା ସହିତ ଇଣ୍ଟେଲିଜେନ୍ସର ବିଶେଷ ସମ୍ପର୍କ ଥାଏ ବୋଲି ମୁଁ ଭାବେ ନାହିଁ । ସେ ଯାହା ହେଉ, ଦେଖନ୍ତୁ ତ ଦୁହିଁଙ୍କ ମଧ୍ୟରେ କି ଅଭେଦ ପ୍ରୀତି । ମିଷ୍ଟର କାଣୀକର ମିସେସ୍‌ଙ୍କ ପାଇଁ ଗଜରାହାର କିଣି ଦେଉଛନ୍ତି, ଆଉ ମିସେସ୍ କାଣୀକର ମିଷ୍ଟରଙ୍କ ପାଇଁ ରେଡ଼ିମେଡ୍ ବୁସ୍ ସାର୍ଟ । It really makes one feel nice to see it.

[କାର୍ତ୍ତିକ ଏକ ଝରକା ଖୋଲି ବାହାରେ ପାନ ଛେପ ପକେଇବା ଏବଂ ପୁଣି ଫେରିଆସିବା ]

କାର୍ତ୍ତିକ : ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ ଏମିତି ଫର୍ମାଲିଟି ସବୁ ଦେଖିଲେ, ଭିତରେ କିଛି ଗଡ଼ବଡ଼ ଥିବାର ମୋର ମନେ ହୁଏ ।

ବେଙ୍କଟେ : (ରାଗିଯାଇ) ଏଇ ଆପଣଙ୍କର ମତାମତ ଥିଏଟର ?

କାର୍ତ୍ତିକ : ଯାହା ତୁ ବୁଝୁ ନାହୁଁ ସେଥିରେ ମୁଣ୍ଡ ଖେଳାନା । ତୁ ଏବେ ବି ପିଲା । ଏବେ କଲେଜ ପଢ଼ାପଢ଼ିରେ ମୁଣ୍ଡ ଖେଳା । ମୋ କଥା ମୁଁ କହୁଛି । ମୁଁ ସ୍ତ୍ରୀ ପାଇଁ

କେବେ ଟଙ୍କାଗ୍ୱାର କଣି ଦଏ ନାହିଁ । କେବେ ଇଚ୍ଛା ହେଲେ ବି ଲୁଚି ରଖେ ।

(ବେଣାରେ ଖୁଁ ଖୁଁ କରି ଉଠିବା) କ'ଣ ହେଲା ?

ବେଣାରେ : ମୁଁ ଆପଣଙ୍କ ପାଖରେ ଥିଲେ, ପ୍ରତିଦିନ ଗୋଟାଏ ଗୋଟାଏ ଗଜରା କିଣି ଦିଅନ୍ତି ।

ସୁଖାମ୍ରେ : ତା'ହାଲେ ଆପଣ ଆପଣଙ୍କ ସ୍ୱାମୀଙ୍କ ପାଇଁ ବୁଦ୍‌ଧାଟ' କିଣିବା ଆରମ୍ଭ କରି ଦିଅନ୍ତୁ, ମିସ୍ ବେଣାରେ । କେମିତି ହୋଇଥିବେ ସେ ଭାଗ୍ୟବାନ । ସେ ଯଦି ଆପଣଙ୍କ ଭଳି ଏମିତି mischievous ହୋଇଥିବେ ନାଁ, ତା'ହେଲେ ତ ମାମଲା ଖତମ ।

ବେଣାରେ : ସେ କଥା ଛାଡ଼ନ୍ତୁ । (ହଠାତ୍ ଚାରିଆଡ଼କୁ ଚାହିଁ ସାମନ୍ତଙ୍କୁ) ଆଚ୍ଛା, ଏଠି ଆଉ କେତୋଟା ଚେୟାର ମିଳିପାରିବ ନାହିଁ ? କ'ଣ କହୁଛ ? ତମ ନାଁ'ଟା କଣଟି ?

ସାମନ୍ତ : ମୋ ନାଁ ସାମନ୍ତ । (ଉଠି ଏପଟ ସେପଟ ହୋଇ' ମୁଁ ଦେଖୁଛି, ମୁଁ ନିଜେ ବି ଜାଣିନାହିଁ ।

[ଖୋଜିବାକୁ ଭିତରକୁ ଚାଲି ]

ପୋଙ୍ଗେ : ହଁ, ଭିତରେ ଅଛି କେତୋଟା ଫୋଲଡିଙ୍ଗ୍ ଚେୟାର । ହଁ, କପେ ଚା' ମିଳିଲେ ଭଲ ହୁଅନ୍ତା ।

ସୁଖାମ୍ରେ : ଷ୍ଟେସନରେ ଖାଇଲାବେଳେ ତମେ ମନା କଲ ଯେ ?

ପୋଙ୍ଗେ : Thanks, ସେତେବେଳେ ମୋର ଦରକାର ନଥିଲା । ଆପଣମାନଙ୍କ ପରି in advance, ସବୁ କରି ବସିବାଟା ମୁଁ ପସନ୍ଦ କରେ ନାହିଁ । ସେ କି ଜୀବନ ? ଆଜିର ଏ ସାଇନ୍‌ସର ଦୁନିଆରେ ଯେତେବେଳେ ଯାହା ଲୋଡ଼ିବ ତାହା ହାତ ପାଖରେ ମିଳି ଯିବାରେ ସିନା ମଜା । (ଚୁଟିକି ବଜାଇ) Like this ।

[ଦୁଇ ହାତରେ ଟ୍ରେ କ ନେଇ ସାମନ୍ତର ପ୍ରବେଶ]

ସାମନ୍ତ : (ଚୌକ ରଖି ରଖି) ଆଉ ଚୌକ ଦରକାର ଥିଲେ ଭିତରେ ଅଛି ।

[ପୋଙ୍ଗେ ଛଡ଼ା ସମସ୍ତେ ଚୌକରେ ବସିଯିବା ଓ କଥାବାର୍ତ୍ତା ଚଳାଇବା ]

ସାମନ୍ତ : (ପୋଙ୍ଗେଙ୍କର ସାହେବୀ ଢଙ୍ଗରେ ଦବ ଯାଇ ସଙ୍କୋଚରେ) ଆପଣ ବସିବେନ ସାର ?

ପୋଙ୍ଗେ : (ଖସି ହେଇ) No, thank you । ଟ୍ରେନରେ ବସି ବସି ଆସିଛୁ । ଆଚ୍ଛା ଆପଣଙ୍କ ନାଁ ?

ସାମନ୍ତ : ସାମନ୍ତ । ଏ ଗାଁରେ ମୋର ଘର ସାର୍ ।

ପୋଙ୍ଗେ : Good । ଏଠି କିଛି ଚା'ର ବ୍ୟବସ୍ଥା ହୋଇପାରିବ ?

ସାମନ୍ତ : ଚା ? ହିଁ, ହବ ସାର୍ । କିନ୍ତୁ ଅସୁବିଧା ହେଉଛି ଚିନି ପାଇଁ । ଚିନି ଆଜକାଲି ମିଳୁନାହିଁ । ଗୁଡ଼ରେ ଯଦି ଚଳିବ !

ପୋଙ୍ଗେ : ନୋ, ନୋ, ତାରେ ଗୁଡ଼ ଡାଏଜେନସ୍ ହୋଇଯାଏ । ଆପଣ ଏହା ଜାଣନ୍ତି ନାହିଁ, ମିଷ୍ଟର ସାମନ୍ତ ?

ସାମନ୍ତ : ସାର୍ ! ଆମ ଏଠି ତ ପ୍ରାୟ ସମସ୍ତେ ଗୁଡ଼ର ଚା' ପିଅନ୍ତି । ରେସନ୍‌ରେ ଚିନି ଯାହା ମିଳେ, ତା ଅଣ୍ଟେ ନାହିଁ । ତାହେଲେ କଅଣ କରାଯିବ ?

ପୋଙ୍ଗେ : (ପାଇପ୍ ମୁହଁରେ ଦେଇ ମାଇଣ୍ଡିଷ୍ଟ ଭଳି) ହୁଁ—

ବେଣାରେ : (ପୋଙ୍ଗେଙ୍କୁ ପରିହାସ କରି) ହୁଁ – ମାନେ ହୁଁ । ଥିଲେ ଜଣେ ହୁଁ···ସେ ଜାଣିଥିଲେ ଜଣେ ହିଁ ଅଳ୍ପ—ତା ନା ଉହୁଁ ।

ପୋଙ୍ଗେ : ବନ୍ଦ କରନ୍ତୁ ମିସ୍ ବେଣାରେ । ଏମିତି ପିଲାଙ୍କ ପରି ହୁଅନ୍ତୁ ନାହିଁ । (ସାମନ୍ତ ଠିଆ ହୋଇଥିବା, ମିଷ୍ଟର ଓ ମିସେସ୍ କାଶୀକରଙ୍କ ପ୍ରବେଶ)

ମିସେସ୍ କାଶୀକର : (ନିଜ ଅଜାଣତରେ ମୁଣ୍ଡର ଗଜରା ଠିକ୍ କରୁ କରୁ) ହେଇଟି ତ ଏଠି ସମସ୍ତେ ଅଛନ୍ତି ।

ସୁଖାତ୍ମେ : ଆସନ୍ତୁ, ଆସନ୍ତୁ ମିଷ୍ଟର କାଶୀକର ! ଆଜ ହାର ଖରଦ କେମିତି ହେଲା ।

[ସାମନ୍ତଙ୍କୁ ବେଣାରେ ଠାରରେ ମିଷ୍ଟର ଓ ମିସେସ୍ କାଶୀକରଙ୍କୁ ଚହ୍ନାଇ ଦେଲେ]

ମିସେସ୍ କାଶୀକର : ରୋକଡ଼େ, ସବୁ ସାମାନପତ୍ର ଠିକ୍ ଆଣିଛୁ ତ ?

ରୋକଡ଼େ : ହଁ ସବୁ ଠିକ୍ ।

ମିଷ୍ଟର କାଶୀକର : ଏବେ ତ କହୁଛୁ ସବୁ ଠିକ୍ ବୋଲି । କିନ୍ତୁ ପ୍ରତିଥର କିଛି ନା କିଛି ତୁ ଭୁଲି ଯାଇଥାଉ । ଅଦାଲତ ଜମାଦାରର ଲଠି ଆଣିଛୁ ନା ? ମୁଣ୍ଡ ହଲେଇ ଦେଲେ ଚଳିବ ନାହିଁ । ଦେଖା କେଉଁଠି ଅଛି ?

ରୋକଡ଼େ : (ଦେଖାଇ) ହେଇଟି ଦେଖନ୍ତୁ । ଜମାଦାର ଡ୍ରେସ ମଧ୍ୟ ଆଣିଛୁ । କେବେ କେବେ ସିନା ମୋର ଭୁଲ୍ ହୋଇଯାଏ, ସବୁବେଳେ କ'ଣ ମୁଁ ଭୁଲ କରେ ?

ମିଷ୍ଟର କାଶୀକର : କେବେ ତୁ ଭୁଲ କରୁକି ନକରୁ, ଏବେ ସେ କଥା ଉଠ୍ ନାହିଁ । ଆଜି ପାଇଁ ସବୁ ଠିକ୍ ଅଛି କି ନାହିଁ କହ । ନ ହେଲେ ସବୁ ସତ୍ୟାନାଶ ହୋଇଯିବ ! ମୁଁ ଜଜ୍ ହେବ ତ, ସେଥିପାଇଁ ଓ୍ୱିଗ୍ କାହିଁ ? ଆଣିଛୁ ନା ନାହିଁ ?

ରୋକଡ଼େ : (ବଳକ୍ ଭାବରେ) ହେଇଟି ଆଣିଛୁ, ସେଇଟା ତ ପ୍ରଥମେ ଆଣିଥିଲି ।

କାଶୀକର : ଆଚ୍ଛା ସୁଖାତ୍ମେ! ଆପଣ ଓକିଲ ଗାଉନ୍ ଆଣିଛନ୍ତି ତ ?

ସୁଖାତ୍ମେ : ଇଏସ୍ ୟୋର ଅନର୍ । ସ୍ୱପ୍ନରେ ମଧ୍ୟ ତାହା ମୁଁ ଭୁଲିବ ନାହିଁ । ଆଉ ତମ କଥା କ'ଣ ପୋଙ୍ଗେ ?

ପୋଙ୍ଗେ : ମୁଁ ତ ପୁରା ଡ୍ରେସ୍ ଅପ୍ ହୋଇ ଆସିଛି । ତେଣୁ ମୁଁ କିଛି ଭୁଲିଯିବା ପ୍ରଶ୍ନ ନାହିଁ । ମୁଁ ଟିକିଏ ନର୍ଭସ୍ ଟାଇପ୍ର

ଲୋକ ତ ! ମୋ ମୁହଁରେ ପାଇପ୍ ନଥିଲେ ଓ଼୍ୱିଟ୍‌ନେସ ବକସରେ ମୋର କିଛି ମନେ ପଡ଼େ ନାହିଁ ।

ମିସେସ୍ କାଶୀକର : ସେ। ଅଗରୁ ଆଜ ମୁଁ ତମ ପାର୍ଟଟା ପୁଣିଥରେ ରିହର୍ସଲ୍ କରାଇ ଦେବ ।

ପୋଙ୍ଗେ : ସେଥିର ଦରକାର ନାହିଁ ।

ମିସେସ୍ କାଶୀକର : ଆଚ୍ଛା ବେଣାରେ (ମୁଣ୍ଡର ଗଜରା ଠିକ କରୁ କରୁ) ତମ ପାଇଁ ମଧ୍ୟ ଗଜରା କିଣିବାକୁ ଭାବଥିଲି ।

ବେଣାରେ : (ପୋଙ୍ଗେ କହୁଥିବା ଭଙ୍ଗୀରେ)ହୁଁ—(ପୋଙ୍ଗେ ରାଗରେ ଦାନ୍ତ କାମୁଡ଼ିବା)

ମିସେସ୍ କାଶୀକର : (ମିଷ୍ଟର କାଶୀକରଙ୍କୁ) ବେଣାରେ ପାଇଁ ମୁଁ ଗଜରା କିଣିବାକୁ ଯାଉ ନ ଥିଲି ? କିନ୍ତୁ—

ବେଣାରେ : (ହସି ହସି) ଗଜରା ଉଡ଼ିଗଲା ଫୁର୍ ର୍ ! ନା କୁଆ ନେଇଗଲା ? କିନ୍ତୁ ମୁଁ ଗଜରାହାର କେବେ ଚାହେଁ ନାହିଁ । ଚାହୁଁଥିଲେ କଅଣ କିଣିବାକୁ ମୋର ସାମର୍ଥ୍ୟ ନାହିଁ ? ମୁଁ ନିଜେ ରୋଜଗାର କରେ । ତା ବୋଲି, ଏ ହାର ପ୍ରଭୃତି କିଣିବା ମୁଁ ପସନ୍ଦ କରେ ନାହିଁ ।

[ବେଣାରେ ମିସେସ୍ କାଶୀକର ଆଣିଥିବା ବିସ୍କୁଟ ବାଣ୍ଟିବା]

ମିସେସ୍ କାଶୀକର : ତମ ସ୍କୁଲ କଥା କଅଣ ?

ବେଣାରେ : (ସାବଧାନ ହୋଇ) ସ୍କୁଲ କଥା ? କିଛି ନାହିଁ ।

ମିଷ୍ଟର କାଶୀକର : ଆଚ୍ଛା ମୁଁ ଭାବୁଛି ଏଠି ଜଜ୍‌ଙ୍କ ଆସନ କେଉଁ ପାଖକୁ ପକାଇବା । ଏ ପାଖକୁ ?

କାର୍ତ୍ତିକ : ଏଠି ରଖିବା । ପ୍ରବେଶ ଦ୍ୱାର ଏ ପଟେ । ସେ ପଟ ରୁମ୍‌ଟା ଜଜ୍‌ଙ୍କ ରୁମ୍ ହୋଇପାରେ । ୟୁ କ୍ୟାନ୍ ଏଣ୍ଟର ଫ୍ରମ୍ ଦେୟାର । ପ୍ରେସିଡ଼େଣ୍ଟ ଜନ୍‌ସନ୍ ଏଠି ଏମିତ ଠିଆ ହେବେ !

ସାମନ୍ତ . (ଆଶ୍ଚର୍ଯ୍ୟ ହୋଇ) ପ୍ରେସିଡ଼େଣ୍ଟ ଜନ୍‌ସନ୍ !

ମିଷ୍ଟର କାଣୀକର : ଜନ୍‌ସନ୍‌ଙ୍କ ଡ଼କ୍ ଏଠି ନ ରଖି ସେ ପଟେ ରଖାଯିବା ଠିକ ହେବ । ତା ହେଲେ ସେ ମୋତେ ଜଜ୍ ବୋଲି ସମ୍ବୋଧନ କରିବା ବେଳେ—

କାର୍ତ୍ତିକ : ଏ କଥାରେ ମୁଁ ଏକମତ ନୁହେଁ । ଦର୍ଶକଦୃଷ୍ଟିରୁ ଦେଖିଲେ, ଜନ୍‌ସନ୍‌ଙ୍କ ଡ଼କ୍ ଏଠି ରହିବା ଦରକାର ।

ସୁଖାମ୍ବେ : ମିଷ୍ଟର କାର୍ତ୍ତିକ ! ଦର୍ଶକଙ୍କ ଦୃଷ୍ଟିରୁ ଦେଖିବା କଥା ଯେନ ମୁଁ ଆପଣଙ୍କୁ ପ୍ରସିକ୍ୟୁଟ୍ କରିବ—ଆପଣ ପରା ମଡ଼ର୍ଣ୍ଣ ଥିଏଟର ବାଲା (ହସିବା)

କାର୍ତ୍ତିକ : ପୁଣି ସେଇ ବାଜେ କଥା । ଆଚ୍ଛା, କଏ ଏଠି ମତେ କହି ପାରିବ ମଡ଼ର୍ଣ୍ଣ ଥିଏଟର କଅଣ ? କିଛି ନ ବୁଝି ଲୋକେ ଅନେକ କଥା କହିଯାନ୍ତି । ମୁଁ ଯାହା ଠିକ୍ ବୋଲି ଭାବୁଛି, ତା କହୁଛି । ସେଥିରେ ନୂଆ ପୁରୁଣାର ପ୍ରଶ୍ନ ନାହିଁ ।

ସାମନ୍ତ : (ଆଲୋଚନା ଭିତରେ ଗୋକଡ଼େଙ୍କୁ) ଆଚ୍ଛା, ଏ ପ୍ରେସିଡେଣ୍ଟ ଜନ୍‌ସନ୍ କଥା କଅଣ ?

ଗୋକଡ଼େ : (ହଠାତ୍ ଚମକି) କାହା କଥା ?

ସାମନ୍ତ : କଅଣ ସବୁ ପ୍ରେସିଡ଼େଣ୍ଟ ଜନସନ୍ କଥା ହେଉଥିଲା ।

ଗୋକଡ଼େ : ଓଃ···ହଁ······

ସାମନ୍ତ : ପ୍ରେସିଡ଼େଣ୍ଟ ଜନ୍‌ସନ୍ ତ ଆଜ ଏଠିକି ଆସିବେ ନାହିଁ । ତା ହେଲେ ଏସବୁ କଅଣ—କେମିତି—

ଗୋକଡ଼େ : ପ୍ରେସିଡ଼େଣ୍ଟ ଜନ୍‌ସନ୍ କଅଣ ଆସନ୍ତେ, ଆମର ଏଇ ମିଷ୍ଟର କାର୍ତ୍ତିକ ହେବେ ପ୍ରେସିଡେଣ୍ଟ ଜନ୍‌ସନ୍—

ସାମନ୍ତ : ପ୍ରେସିଡ଼େଣ୍ଟ ଜନ୍‌ସନ୍—

ରୋକଡ଼େ : (ହଠାତ୍ କଅଣ ମନେ ପକାଇ ମିସେସ୍ କାଶୀକରଙ୍କ ପାଖକୁ ଆସିବା) ଆଚ୍ଛା, ପ୍ରଫେସର ଡାମଲେ ଅହୁରି ଆସିଲେ ନାହିଁ ।

[ମିସେସ୍ କାଶୀକରଙ୍କ ସହିତ କଥାବାର୍ତ୍ତା କରୁଥିବା ମିସ୍ ବେଣାରେ ହଠାତ୍ ନୀରବ ଓ ଗମ୍ଭୀର ହୋଇ ଉଠିବା । ତାପରେ ସେ ତାଙ୍କ ଅଜାଣତରେ ପୋଙ୍ଗେ ନିକଟକୁ ଯାଇ ତାଙ୍କୁ ଏଣୁତେଣୁ କହିବା ଆରମ୍ଭ କରିବା, ପୋଙ୍ଗେ କିନ୍ତୁ ନୀରବ]

ମିସେସ୍ କାଶୀକର : ପ୍ରଫେସର୍ ଡାମଲେ ସବୁଥର ପରି ଏଥର ବି ଡେରିରେ ଆସିବେ । ସେ ମୋତେ ଫୋନ୍‌ରେ ଖବର ଦେଇଥିଲେ ଯେ ସେ ଆମ ସହିତ ଏ ଟ୍ରେନ୍‌ରେ ଆସିପାରିବେ ନାହିଁ । ତାଙ୍କର ବିଶ୍ୱ-ବିଦ୍ୟାଳୟରେ ଗୋଟାଏ ସିମ୍ପୋସିୟମ୍ ନା କଅଣ ଥିଲା ଯେ ସେଥିରେ ସେ ବ୍ୟସ୍ତ ଥିଲେ । ମୁଁ ତାଙ୍କୁ ଆଜିର ପ୍ରୋଗ୍ରାମ ବିଷୟ ଦୁଇ ଦୁଇଥର ମନେପକାଇ ଦେଇଛି । ଆଚ୍ଛା ବେଣାରେ ! ତାଙ୍କ ସହିତ ତମର ଭେଟ ହୋଇଥିଲା ?

ବେଣାରେ : (ପୋଙ୍ଗେ ସହିତ କଥାବାର୍ତ୍ତା କରୁ କରୁ) କାହା ସହିତ !

ମିସେସ କାଶୀକର : ପ୍ରଫେସର ଡାମଲେ ।

ବେଣାରେ : ନା, ମୋର ଭେଟ ହୋଇନି । (ପୋଙ୍ଗେଙ୍କୁ ପୁଣି କଅଣ ସବୁ କହିବା, ପୋଙ୍ଗେ ଚୁପ୍‌ଚାପ୍)

ରୋକଡ଼େ : କିନ୍ତୁ ମା', ସାମନ୍ତ ତ କହୁଛନ୍ତି ଯେ ଆରଟ୍ରେନ୍ ଗାଡ଼ି ନଅଟା ପୂର୍ବରୁ ଏଠି ପହଞ୍ଚେ ନାହିଁ । ତାହେଲେ କେମିତି ହେବ ? ମିଷ୍ଟର ଡାମଲେ ପହଞ୍ଚୁ ପହଞ୍ଚୁ ତ ଲେଟ ହୋଇଯିବ !

ପୋଙ୍ଗେ : (କଥାବାର୍ତ୍ତା ଭିତରେ ଅନ୍ୟକଥା ଉଠାଇ) ଆଚ୍ଛା, ମିସ୍ ବେଣାରେ, ଆପଣଙ୍କର ସେ ବନ୍ଧୁଙ୍କ କଥା କ'ଣ ହେଲା ? ସେଇ ଯେ ଅସୁବିଧାରେ ପଡ଼ିଥିଲେ, ଆଜ ଯାହାଙ୍କୁ ମୋ ସହିତ ବାହା କରାଇବାକୁ ଆପଣ କହୁଥିଲେ । (ବେଣାରେ ବିବ୍ରତ ହୋଇପଡ଼, କଅଣ କରିବେ କିଛି ବୁଝି ନପାରି ସାମନ୍ତ ପାଖକୁ ଯିବା )

ମିସେସ୍ କାଣୀକର : ଆଚ୍ଛା, ମଝିରେ ଆଜ ଗୋଟାଏ ଟ୍ରେନ୍ ଥିଲା ନା ? (ମିଷ୍ଟର କାଣୀକରଙ୍କୁ) ତମେ ଶୁଣୁଛ—ବାଲୁ କହୁଛି ଏ ଭିତରେ ଆଜ ଟ୍ରେନ୍ ନାହିଁ ।

କାଣୀକର : (କାର୍ତ୍ତିକ ସହିତ ତାଙ୍କ ଯୁକ୍ତି ତର୍କ ବନ୍ଦକରି) କାହା ଭିତରେ ?

ଗୋକଡେ : ଏଇ ସାମନ୍ତ କହୁଛନ୍ତି ଯେ ଶୋ ପୁର୍ବରୁ ଆଜ ଟ୍ରେନ ନାହିଁ ।

ସୁଖାମ୍ବେ : ତା'ପରେ ଅଛି ତ ? ସେଥିରେ କାମ ଚଳିଯିବ ।

ମିଷ୍ଟର କାଣୀକର : କିନ୍ତୁ ସୁଖାମ୍ବେ, ପ୍ରଫେସର ଡ଼ାମଲେ କେମିତି ଆସିବେ ? ସେ ଆସିଲେ ବି ଦେରିରେ ପହଞ୍ଚିବେ; ଏ ଭିତରେ ଆଉ ଗାଡ଼ି ନାହିଁ ଯେ ।

କାର୍ତ୍ତିକ : ତା'ହେଲେ ସେ ଆସିବେ ନାହିଁ । ମୁଁ କହି ରଖୁଚି, ସେ ବଡ଼ ହିସାବୀ ଲୋକ । ଡେରି ହୋଇଯିବା ଦେଖିଲେ, ସେ ଆସିବା ପ୍ରୋଗ୍ରାମ୍ କ୍ୟାନସେଲ୍ କରି ଘରେ ଆରାମରେ ବସିଯିବେ ।

ଗୋକଡେ : (ବ୍ୟସ୍ତଭାବେ ମିସେସ୍ କାଣୀକରଙ୍କୁ) ମା— ମୁଁ ତାଙ୍କୁ କାର୍ଡ଼ ପଠେଇବାରେ ଭୁଲ କରିନାହିଁ । ଅନ୍ୟ ସମସ୍ତଙ୍କୁ ପଠାଇଲି ଭଳି ତାଙ୍କୁ ମଧ୍ୟ ପଠାଇଛି । କାର୍ଡ଼ରେ ତାଙ୍କ ଠିକଣା ମଧ୍ୟ ଠିକ୍ ଲେଖିଥିଲି । ମୋର କିଛି ଦୋଷ ନାହିଁ ।

ମିଷ୍ଟର କାଶୀକର : ସେ୍ତ ପୁଣି ଗୋଟାଏ ମୁଣ୍ଡବ୍ୟଥା ।

ସୁଖାମ୍ଭେ : ଏଥିରେ ବ୍ୟସ୍ତହେବାର କଅଣ ଅଛି ? ଆପଣ ଅଯଥା ଚିନ୍ତା କରନ୍ତୁ ନାହିଁ ।

ମିଷ୍ଟର କାଶୀକର : ଚିନ୍ତା କରିବ ନାହିଁ ? ଏ କଣ ତମେ କହୁଛ ସୁଖାମ୍ଭେ ? We owe something to the people. ଗୋଟାଏ ପ୍ରୋଗ୍ରାମ ତ—କିଛି ମଉଜର କଥା ନୁହେଁ ।

ପୋଙ୍ଗେ : (ତାଙ୍କ ପାଖରେ ପହଞ୍ଚି) କଥା କଅଣ ?

ମିସେସ୍ କାଶୀକର : (ସୁଖାମ୍ଭେଙ୍କୁ) ଏବେ ଆସନ୍ତା ପକ୍ଷର ଓକିଲ କିଏ ହେବ ?

ସୁଖାମ୍ଭେ : ଡୋଣ୍ଟ ୱ୍ୟରି । ଆଜିକ ପାଇଁ ମୁଁ ଦୁଇପକ୍ଷର ଓକିଲ କାମ ତୁଲାଇ ଦେବି । ଏଥିରେ କଅଣ ଅଛି ? ମୋ ଦେହରେ ଓକିଲ ରକ୍ତ ରହିଛି । ମୁଁ କହୁଛି ମିଷ୍ଟର କାଶୀକର, ଆପଣ ସେ କଥା ମୋ ଉପରେ ଛାଡ଼ି ଦିଅନ୍ତୁ ।

କାର୍ଣ୍ଣିକ : ବାଃ, ତା'ହ ଆହୁରି ଡ୍ରାମାଟିକ୍ ହୋଇ ଉଠିବ ।

ପୋଙ୍ଗେ : (ପାଇପ୍‌ରୁ ଗମ୍ଭୀରଭାବେ ଧୂଆଁ ଛାଡ଼ିବା) ନିଶ୍ଚୟ ।

ବେଣାରେ : ନିଶ୍ଚୟ ।

[ପୋଙ୍ଗେ ବେଣାରେଙ୍କୁ କ୍ରୋଧରେ ଚାହିଁବା ]

ରୋକଡ଼େ : (ହାତରେ ଧରିଥିବା ଏକ କାଗଜ ଦେଖି) କିନ୍ତୁ ଚତୁର୍ଥ ସାକ୍ଷୀପାଇଁ ମଧ ଲୋକ ଅଭାବ ପଡ଼ିବେ, ମିଷ୍ଟର ସୁଖାମ୍ଭେ । ରାବତେ ବେମାର ପଡ଼ିଛନ୍ତି । ତାଙ୍କ ସ୍ଥାନରେ ଆମେ ସ୍ଥାନୀୟ କାହାକୁ ହେଲେ ନେବାକୁ ଭାବିଥିଲେ । (ସେ ହଠାତ୍ ମିସେସ କାଶୀକରଙ୍କ ଦୃଷ୍ଟିକୁ ଲକ୍ଷ୍ୟକରି, ନିଜକୁ ସଂଶୋଧନ କରିନେବା) ମାନେ ଆପଣ କହିଥିଲେ ।

ସୁଖାମେ୍ : ହଁ...ଏଠାରେ କେହ୍ବ—ତା ଅର୍ଥ—

ଗୋକଢେ : ମୁଁ ଆଜ ସେ ରୋଲଟା କରିଦେବି । ମୋର ନିଜ ରୋଲ ତ ଅଳ୍ପ । ରୋଲଟା ଆଉ କେହ୍ବ କରିଦେଇ ପାରିବ । ଚତୁର୍ଥ ସାକ୍ଷୀର ଫ୍ଲାପ ମଧ୍ୟ ମୋର ମନେଅଛି ।

କାର୍ତ୍ତିକ : ନାଁ, ଆଇ ଅପୋଜ । ତୁ ଜମାଦାର ରୋଲ ନେଇଥିଲେ ମଧ୍ୟ, ତା' ସେମିତି ସହଜ ରୋଲ ନୁହେଁ । ସେଥିରେ ବେଶୀ ଡାୟଲଗ ନଥିଲେ କଅଣ ହେଲା ଶେଷ ମୁହୂର୍ତ୍ତରେ ସେ ରୋଲରେ ଆଉ ଜଣକୁ ଠିଆ କରେଇ ଦେଲେ ଚଳିବ ନାହିଁ । ଗୋକଢେ, ତତେ ହିଁ ସେ ରୋଲ କରିବାକୁ ହେବ ।

ଗୋକଢେ : କିନ୍ତୁ ଯଦି ମୁଁ ଆଉ ଗୋଟିଏ ରୋଲ କରିଦେଲେ ଚଳିବ ନାହିଁ ?

ମିଷ୍ଟର କାଶୀକର : ନାଁ ।

ମିସେସ କାଶୀକର : ସେମାନେ ମନା କରୁଛନ୍ତି ତ ଏବେ ନକର । (ଗୋକଢେ ଦବିଯିବା) ତା'ହେଲେ ଚତୁର୍ଥ ସାକ୍ଷୀ ରୋଲ କରିବ କିଏ ?

ସୁଖାମେ୍ : (ସାମନ୍ତଙ୍କୁ ଗୁହିଁ) I know (ହଠାତ୍) ହେଇଟି, ଆପଣଙ୍କର ଚତୁର୍ଥ ସାକ୍ଷୀ ସାମନ୍ତ ।

ସାମନ୍ତ : (ବୁଝି ନପାରି) ଆଜ୍ଞା

ପୋଙ୍କ୍ଷେ : Not bad.

ମିଷ୍ଟର କାଶୀକର : (ସାମନ୍ତଙ୍କୁ) କି ମିଷ୍ଟର ସାମନ୍ତ, ଆପଣ କେବେ, କୌଣସି ନାଟକରେ ଅଭିନୟ କରିଛନ୍ତି ?

ସାମନ୍ତ : ନାଁ, କେବେ କରିନାହିଁ । କାହିଁକି କଅଣ ହେଲା ?

ମିସେସ୍ କାଶୀକର : ଆମ ଅଭିନୟରେ ଆପଣ ହେବେ ଚତୁର୍ଥ ସାକ୍ଷୀ । ଆଚ୍ଛା ବେଣାରେ, ତମ ମତ କଅଣ ? ଏ ଲୋକ ବା ରୋଲକୁ ଠିକ୍ ହେବେ ?

ବେଣାରେ : yes, not bad। ମାନେ I think he is lovely. (ସାମନ୍ତ ସଙ୍କୁଚିତ ହେବା) ମାନେ ଚତୁର୍ଥ ସାକ୍ଷୀର ବେଳରେ– ଚତୁର୍ଥ ସାକ୍ଷୀ (ହସିବା)

ସୁଖାମ୍ବେ : ମିସେସ୍ କାଶୀକର, ପୋଙ୍ଗେ, କେହି ବ୍ୟସ୍ତ ହୁଅନ୍ତୁ ନାହିଁ। ମୁଁ ସେଥିର ଦାୟିତ୍ୱ ନେଉଛି। ସେ ବେଳରେ କଅଣ ଅଛି ? ମୁଁ ଏ ଲୋକକୁ ଠିକ୍ prepare କରାଇ ନେବି। ଆଚ୍ଛା ଆପଣଙ୍କ ନାଁ। କଅଣ ?

ସାମନ୍ତ : ରଘୁ ସାମନ୍ତ।

ସୁଖାମ୍ବେ : ମିଷ୍ଟର ସାମନ୍ତ। ବେଶ୍, ଆଜ ଆମର ଏ ଅଭିନୟରେ ଆପଣଙ୍କୁ ଆମେ ଆମର ଚତୁର୍ଥ ସାକ୍ଷୀ କରୁଛୁ।

ସାମନ୍ତ : କିନ୍ତୁ-ମୁଁ, ମୁଁ ଏସବୁ କିଛି ଜାଣେ ନାହିଁ।

ମିସେସ୍ କାଶୀକର : ଆପଣ ଅଦାଲତ ଦେଖିଛନ୍ତି ତ ?

ସାମନ୍ତ : ନାଁ, ଆଜ ପର୍ଯ୍ୟନ୍ତ ସେ ସୁଯୋଗ ଯୁଟିନାହିଁ।

କାର୍ତ୍ତିକ : କୌଣସି ନାଟକରେ ?

ସାମନ୍ତ : ଧେତ୍। ସେମିତି ନାଟକ ତ ଏଠି କେବେ ହୋଇ ନାହିଁ।

ସୁଖାମ୍ବେ : (କାର୍ତ୍ତିକଙ୍କୁ) ସେ ନାଟକରେ ମଧ୍ୟ କେବେ ଅଦାଲତ ଦେଖିନାହାନ୍ତି। ଏଇଟା ଭଲକଥା, ଅନ୍ତତଃ ଅଦାଲତ ସମ୍ପର୍କରେ ତାଙ୍କର ଭୁଲ୍ ଧାରଣା ନଥିବ।

କାର୍ତ୍ତିକ : ନିଜ ମନ୍ତବ୍ୟ କୌଣସି ନିର୍ଦ୍ଦିଷ୍ଟ ନାଟକ ବିଷୟରେ ସୀମିତ ରଖନ୍ତୁ।

ସୁଖାମ୍ବେ : (ସାମନ୍ତଙ୍କୁ) ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ। ମୁଁ ଆପଣଙ୍କୁ ରୋଲ୍ ସବୁ ବତେଇ ଦେବି। ସାକ୍ଷୀକୁ କେମିତି ଉଆର

କରିବାକୁ ହୁଏ, ତା ଓକିଲକୁ ବତେଇବା ଦରକାର ପଡ଼େନାହିଁ । (ହସିବା)

ସାମନ୍ତ : କିନ୍ତୁ ମୋର ଏସବୁ ସମ୍ପର୍କରେ ତ କିଛି ଅଭିଜ୍ଞତା ନାହିଁ । ଅଦାଲତ କଥା ଭାବିଲେ ହିଁ, ମୋ ଦେହ ଥରିଉଠୁଛି ।

ମିସେସ୍ କାଶୀକର : ଆଚ୍ଛା ଏହାଙ୍କୁ ନେଇ ଗୋଟାଏ ରିହର୍ସଲ କରାଯାଉ । (କାଶୀକରଙ୍କୁ) କଅଣ କହୁଛ ? ତମ ମତ କ'ଣ ବେଣାରେ ?

ବେଣାରେ : ମୋର ଆଦୌ ଆପତ୍ତି ନାହିଁ । ମୁଁ ଖାଲି ଭାବୁଥିଲି, ଆମ ଶୋ ଆରମ୍ଭ ହେବା ପର୍ଯ୍ୟନ୍ତ କଅଣ କରାଯିବ ? ଆସିବାବେଳେ ବହି ଖଣ୍ଡେ ବି ଆଣିବାକୁ ମୁଁ ଭୁଲିଯାଇଛି ।

ସାମନ୍ତ : ସୂର୍ଯ୍ୟକାନ୍ତ ଫଡର ଫକରଙ୍କ ନୂଆ ଉପନ୍ୟାସ ମୋ ପାଖରେ ଅଛି । ଆପଣ ପଢ଼ିବେ ? ବେଶ୍ ବଢ଼ିଆ ଉପନ୍ୟାସ । ଏହାକୁ ମିଶାଇ ସୂର୍ଯ୍ୟକାନ୍ତ ବାବୁଙ୍କ ଉପନ୍ୟାସ ସଂଖ୍ୟା ହେଲା ୧୦୫—

ବେଣାରେ : କେତେ ?

ସାମନ୍ତ : ଶହେ ପାଞ୍ଚ ।

[ବହି ଦେଖାଇବା]

ବେଣାରେ : ତା'ହେଲେ ଏବହି ମୋର ଦରକାର ନାହିଁ ।

ସୁଖାତ୍ମେ : ଅଦାଲତରେ ଶପଥପାଇଁ, ଆମ ପାଖରେ ବାଇବଲ୍ ଆଉ ଭଗବତ ଗୀତା ଅଛି । ଆପଣ କିଛି ବହି ଚାହୁଁ ଥିବାରୁ ମୁଁ ଏକଥା କହିଲି । ଆଚ୍ଛା ରୋକଡ଼େ, ତୁ ବାଇବଲ୍ ଆଉ ଭଗବତଗୀତା, ମନେକରି ଆଣିଛୁ ତ ? ନାଁ, ଭୁଲିଯାଇଛୁ ?

ରୋକଡ଼େ : (ବିରକ୍ତ ଭାବେ) ଆଣିଛି, ଦେଖିବେ ? (ବ୍ୟାଗ୍ ପାଖକୁ ଯିବା କିନ୍ତୁ ଭଗବତ ବାହାର ନକରିବା)

ବେଣାରେ : ସେସବୁ ପଢ଼ିବା ବୟସ ମୋର ହୋଇ ନାହିଁ ଓକିଲ ସାହେବ ।

ମିଷ୍ଟର କାଶୀକର : ତା'ହେଲେ—ତମେ ଏସବୁ ଟ୍ରୁ ଷ୍ଟୋରି ବା ସେ ପ୍ରକାର ମଗାଜିନ୍‌ରେ Interested· ମୋ ସ୍ତ୍ରୀ ସେ ସବୁ ପଢ଼ନ୍ତି । ସେସବୁ ବେଶ ଚିତ୍ତାକର୍ଷକ । ମୁଁ ସୋସିଆଲ ଓ୍ୱାର୍କରେ ବ୍ୟସ୍ତ ରହୁଥିବାରୁ ସେସବୁ ମାଗାଜିନ୍‌ର କେବଳ ଛବି ଓଲଟାଇବା ଛଡ଼ା ଆଉ ବେଶୀବାଟ ଯିବାକୁ ମୋର ବେଳ ନଥାଏ ।

ମିସେସ୍ କାଶୀକର : (ପ୍ରତିବାଦକରି) ହେତ୍ ।

ମିଷ୍ଟର କାଶୀକର : ହେତ୍ ମାନେ ? ମୁଁ କଅଣ ମିଛ କହୁଛି ?

[ମିସେସ୍ କାଶୀକରଙ୍କ ଚେହେରା ଫାଙ୍କା ପଡ଼ିଯିବା ।]

କାର୍ତ୍ତିକ : ଏ ରିହର୍ସଲ ଆଇଡ଼ିଆ ମୋ ମନକୁ ବେଶ୍ ପାଇଛି । ଖାଲି କେହିଯାଇ ସିଗାରେଟ ଗୁର ପାଞ୍ଚ ପାକେଟ ନେଇ ଆସିଲେ, ତା'ପରେ ଆଉ ଚିନ୍ତା ନାହିଁ । ରିହର୍ସଲ ମଝିରେ ଆଉ ବାହାରକୁ ଯିବା ଦରକାର ହେବ ନାହିଁ ।

ପୋଙ୍କେ ! I don't mind (ପାଇପରୁ ଫଫ୍ ନେବା)

ସାମନ୍ତ : (ରାକେଡ଼ଙ୍କୁ) ତା'ହେଲେ ମୋର ଆପତ୍ତି ନାହିଁ । ମୁଁ ଥରେ ଦେଖି ଦେଲେ, ତା'ପରେ ଆଉ ଅସୁବିଧା ନାହିଁ । ମୋର ଆଉ ଭୟ ରହିବ ନାହିଁ ।

[ରାକେଡ଼େ ଅନ୍ୟ ମନସ୍କ ରହିବା]

ବେଣାରେ : ମୁଁ ଗୋଟାଏ କଥା କହିବି । ଆମେ ଆଜିର ଏ ଆଟମିକ୍ ଓ୍ୱେପନ୍ ଅଭିନୟ ଗତ ତିନିମାସରେ ସାତଥର କରି ସାରିଲୁଣି । ଆଜି ଅଷ୍ଟମଥର । ଆଜି ଶୋ ପୂର୍ବରୁ ଆଉଥରେ ରିହର୍ସଲ କରି ନେବାରେ

ମୋର ଆପତ୍ତି ନାହିଁ । କିନ୍ତୁ ତା'ହେଲେ ଗନ୍ତର ଶୋକୁ ଆଉ ରୁମ ‹ ହବ ନାହିଁ ।

ସୁଖାମ୍ବେ : ମୋର ମଧ୍ୟ ସେହି ମତ । ମୁଁ ଗୋଟାଏ ଆଇଡ଼ିଆ ଦେଉଚି । ବିଚାର କରି ଦେଖନ୍ତୁ । ଆମେ ଓକିଲ-ମାନେ ବାର୍‌ରେ ଯେତେବେଳେ ଫ୍ରି ରହୁ, ସେତେବେଳେ ସମୟ କଟାଇବାକୁ ରମି, ପେସେନ୍‌ସ ଇତ୍ୟାଦି କିଛି ଖେଳ ଖେଳୁ । Just to pass time. ଆଜି ତେଣୁ କିଛି ଗୋଟିଏ ଇମାଜିନାରି କେସ୍ ବିଚାର କରାଯାଉ । କଅଣ କହୁଛନ୍ତି ? ତା'ହେଲେ ସାମନା ଗୋଟାଏ କୋର୍ଟର ଆଇଡିଆ ପାଇପିବେ । ଆଉ ଆମର ମଧ୍ୟ ସମୟ ଆରାମରେ କଟିଯିବ । କଅଣ କହୁଛନ୍ତି ମିଷ୍ଟର କାଣୀକର ? ଆପଣଙ୍କ ସମ୍ମତି ଅଛି ତ ?

ମିଷ୍ଟର କାଣୀକର : ଠିକ୍ ଅଛି । ସାର୍ବଜନୀନ କ୍ଷେତ୍ରରେ କାମ କରିବା ଲୋକଙ୍କୁ ବ୍ୟକ୍ତିଗତ ଆଗ୍ରହ ନେଇ ଚଳିଲେ ତ ହେବ ନାହିଁ । ବହୁ ମତ ଅନୁସାରେ କାମ କରିବାକୁ ପଡ଼ିଥାଏ ।

କାର୍ତ୍ତିକ : (ଉତ୍ସାହରେ) ଦି ଚପୁର୍‌ସ ଫର ଦିସ୍ ନ୍ୟୁ ଆଇଡ଼ିଆ—ଆମ ଡ୍ରାମା ଥିଓରିରେ ଏହାକୁ ଭର୍ଚୁଆଲ୍ ଏନାକ୍‌ଟମେଣ୍ଟ ବୋଲି କହନ୍ତି । ଗତବର୍ଷ ମୁଁ ସରକାରି ଡ୍ରାମା ସ୍କୁଲରେ ଥିଲାବେଳେ ଏକଥା ଶୁଣିଥିଲି ।

ସୁଖାମ୍ବେ : ଗୋଟାଏ ସରଳ କଥାକୁ ଏମିତି ଏକ ବଡ଼ ନାଁ ଦେବାର କିଛି ଦରକାର ନାହିଁ । ଆଜି ଯାହା ଆମେ କରିବାକୁ ଯିବା ତାହା ତ, ଜଷ୍ଟ ଏ ଗେମ୍ । କଅଣ ମିସ୍ ବେଣାରେ ?

ବେଣାରେ : ଯେ କୌଣସି ଖେଳ ଖେଳିବାକୁ ମୋର ଆପତ୍ତି ନ ଥାଏ । ସ୍କୁଲରେ ମୁଁ ପିଲାଙ୍କ ସାଙ୍ଗରେ ଖୁସି ମନରେ ନାନା ଖେଳ ଖେଳିଥାଏ । ବେଶ୍ ମଜା ଲାଗେ ।

ଘୋଙ୍ଗେ : ଅଚ୍ଛା ଖେଳା ଯାଉ । ମିଷ୍ଟର ସାମନ୍ତ ଆପଣ ଦୟାକରି କେତେ ପ୍ୟାକେଟ୍ ସିଗାରେଟ ଆଣି ଦେଇ ପାରିବେ ? ମୋ ପାଇଁ କ୍ୟାପ୍‌ଷ୍ଟେନ୍ । (ପଇସା ଦେବା)

ମିସେସ୍ କାଶୀକର : ଆପଣ କାହିଁକି ପଇସା ଦେଉଛନ୍ତି ଘୋଙ୍ଗେ ? ସାମନ୍ତ, ପଇସା ଫେରାଇ ଦିଅନ୍ତୁ । ଏ ଝଗଡ଼ା ପ୍ରୋଗ୍ରାମ ଏକ୍‌ସପେନ୍‌ସ ଭିତରେ ଯାଉ । ତା'ହେଲେ ସବୁ ଠିକ୍ । ହେମିତି ଆମେ ସାମନ୍ତଙ୍କୁ ମଧ୍ୟ ପ୍ରୋଗ୍ରାମ ପାଇଁ କୋର୍ଟସିନ ଦେଖାଇବା । ମିଷ୍ଟର ସାମନ୍ତ (ପର୍ସ ଖୋଲି ସାମନ୍ତଙ୍କୁ ନୋଟ ଦେଇ) ଏଇଟା ନିଅନ୍ତୁ । ଯାହାର ଯେଉଁ ସିଗାରେଟ ଦରକାର ସେଥିରୁ ଅଧ ଡଜନ ଖଣ୍ଡେ ପ୍ୟାକେଟ ନେଇ ଆସନ୍ତୁ । ଆଉ ତିନି ଚାରିଟା ମିଠା ପାନ ।

[ସମସ୍ତେ ନିଜ ନିଜ ପସନ୍ଦରେ ସାମନ୍ତଙ୍କୁ କହିବା—ସୁଖାମ୍ରେ ବଢ଼ିପାଇଁ ବରାଦ ଦେବା]

ସାମନ୍ତ : ଯାଉଛି—(ବାହାରକୁ ଯିବା—ପୁଣି ହଠାତ୍ ଫେରି ଆସି) ଆରମ୍ଭ କରିଦେବେ ନାହିଁ । ମୁଁ ଏଇନେ ଆସୁଛି ।

ବେଣାରେ : ବେଟରେ । ମୁଁ ବି ଟିକିଏ ଆସୁଛି ।

[ନାପକିନ ଓ ସାବୁନ ନେଇ ଗୁଣୁଗୁଣୁ ସ୍ୱରରେ ଗୀତ ଗାଇ ଗାଇ ଅନ୍ୟ ରୁମ୍‌କୁ ଯିବା]

ମିସେସ୍ କାଶୀକର : (ରୋକଡ଼େଙ୍କୁ) ବାଲୁ, କୋର୍ଟର ସବୁ ଆରେଞ୍ଜମେଣ୍ଟ କର ।

କାର୍ତ୍ତିକ : ପୋଙ୍ଗେ, ଟିକଏ ଇଆଡ଼କୁ ଆସତ । (ସୁଖାମେନ୍କୁ) ଆଚ୍ଛା ଆଜ ଯେଉଁ ଖେଳ ଖେଳିବା ସେଥିରେ ଆଜ ରାତର cast ଯେମିତ ସେମିତ ରହିବ ତ ? ଜଜ୍ ଓକିଲ ପ୍ରଭୃତ ?

ସୁଖାମେ : ଓ, yes by all ମିନ୍ସ । ବଦଳାଇବା କାହିଁକି ? ମୁଁ ଓକିଲ ରୋଲ କରିବ ।

ମିସେସ୍ କାଶୀକର : କିନ୍ତୁ ମୁଁ କହୁଛି ଅଭିଯୁକ୍ତ ଆସାମୀ ଅନ୍ତତଃ ଆଜ୍ ଜଣେ କିଏ ହୁଅନ୍ତୁ । କାର୍ତ୍ତିକ, ଆପଣଙ୍କ ମତ କଅଣ ?

କାର୍ତ୍ତିକ : ନା, ସେଥିର ଆବଶ୍ୟକତା ନାହିଁ । (ପୋଙ୍ଗେକୁ) ଆଚ୍ଛା, ପୋଙ୍ଗେ ଗୋଟାଏ କଥା ଜାଣିଛ ?

ପୋଙ୍ଗେ : What ?

କାର୍ତ୍ତିକ : (ଭିତର ରୁମ୍ ଆଡ଼କୁ ଇଙ୍ଗିତକରି) ତାଙ୍କ ସମ୍ପର୍କରେ··· ମାନେ, ବେଣାରେ ସମ୍ପର୍କରେ । ରୋକଡ଼େ told me.···

ପୋଙ୍ଗେ : What ?

କାର୍ତ୍ତିକ : Not now. ଆଜ ପ୍ରୋଗ୍ରାମ ପରେ ମତେ ପଚାରିବେ ।

ପୋଙ୍ଗେ : ମୋର ମଧ୍ୟ ଆପଣଙ୍କୁ କିଛି କହିବାର ଅଛି । ଏଇ ମିସ୍ ବେଣାରଙ୍କ ବିଷୟରେ, (ଅନ୍ୟମାନଙ୍କୁ- ବଡ଼ ପାଟିରେ) ମୋ ମତ ପଚାରିଲେ, ମୁଁ କହିବ ମୋର ଆପତ୍ତି ନାହିଁ । It is a good idea. ଏ ଡ଼ିଫେରେଣ୍ଟ ଚିଜ୍ ନର ।

ମିଷ୍ଟର କାଶୀକର : ମୁଁ ଭାବୁଛି, ତା ଦ୍ୱାରା ଆଗ୍ରହ କିଛି ବଢ଼ିବ ।

ମିସେସ୍ କାଶୀକର : ଠିକ୍ ।

ମିଷ୍ଟର କାଶୀକର : ଠିକ୍ ବୋଲି କଣ କହୁଛ ? ତମେ ଚୁପ୍ ରହି ପାରୁନା ? (ମିସେସ୍ କାଶୀକର ଚୁପ୍ ହେବା)

ସୁଖାମ୍ବେ : I don't mind. ଅଭିଯୁକ୍ତ ଆସାମୀ Why not ରେକଡେ ?

(ରେକଡେ ଖୁସିହେବା)

ରେକଡେ : ହଁ, ମୁଁ ପ୍ରସ୍ତୁତ ଅଛି ।

ପୋଙ୍ଗେ : What ? (କାର୍ତ୍ତିକଙ୍କୁ) ମୁଁ କିଛି କହିବ ଆପଣଙ୍କୁ ମିସ୍ ବେଣାରେଙ୍କ ସମ୍ପର୍କରେ ।

କାର୍ତ୍ତିକ : ମୁଁ ଏବେ ଆସାମୀ ରୋଲ କରିବ ।

ମିଷ୍ଟର କାଣୀକର : ଶୁଣନ୍ତୁ, ଆମେ ଯଦି ଯଥାର୍ଥରେ କିଛି କରିବାକୁ ଯାଉଥାଇଁ, ତାହେଲେ ସେଇଟା ହାଲୁକା ହସ ଖୁସିର ବ୍ୟାପାର ନହୋଇ ଠିକ୍ ସିରିୟସ୍ ହେଉ । ମୁଁ ହେବି ଅଭିଯୁକ୍ତ ଆସାମୀ । ସୁଖାମ୍ବେ ମତେ ସେ ରୋଲ ଦିଅ ।

କାର୍ତ୍ତିକ : ବାଃ, ଆପଣ ନିଜେ ଜଜ୍ ପୁଣି ନିଜେ ଆସାମୀ ହେବେ ?

ପୋଙ୍ଗେ : (ପାଇପଟାଣି) ତା'ହେଲେ ମତେ ସେ ରୋଲ ଦିଆଯାଉ । ଅବଶ୍ୟ ମୋର ସେମିତି ଆଗ୍ରହ ନାହିଁ, ଆପଣ ଜାଣନ୍ତି । ତେବେ ଯଦି ଚଳିଯିବ, ଆଇ ଉ agree

ରେକଡେ : କିନ୍ତୁ ମତେ ସେ ରୋଲ ଦେବାରେ ଅସୁବିଧା କଅଣ ?

ମିସେସ୍ କାଣୀକର : ଆଚ୍ଛା ମୁଁ ସେ ରୋଲ ନେବି । ଆପଣମାନେ ଚାହିଁଲେ ମୋର ଆପତ୍ତି ନାହିଁ ।

ମିଷ୍ଟର କାଣୀକର : ନା-ନା, ତମେ ସେ ରୋଲ କରି ପ ରିବନି । ପାଞ୍ଚ ଲୋକଙ୍କ ଭିତରେ ନିଜକୁ ଦେଖାଇ ହେବାର ତମର ଏକ ଅଭ୍ୟାସ ।

ମିସେସ୍ କାଣୀକର : ହଉ, ବହୁତ କହିଲ । ଥାଉ, ମୁଁ ସେ ରୋଲ କରିବ ନାହିଁ । ହେଲା ?

(ଅତ୍ୟନ୍ତ ବିମର୍ଷ ହୋଇ ପଡ଼ିବା)

ସୁଖାମ୍ନେ : ଆଚ୍ଛା, ଆପଣମାନଙ୍କ ଭିତରୁ କେହି ବରଂ ସେ ରୋଲ ନ ନିଅନ୍ତୁ । ଜଣେ ନୂଆ ଲୋକଙ୍କୁ ବାଛିଲେ କେମିତି ହେବ ? ଧରନ୍ତୁ, ଆମର ମିସ୍ ବେଣାରେ— କଅଣ ପୋଙ୍ଗେ ? ମୋ ଚଏସ୍ କେମିତି ?

ପୋଙ୍ଗେ : ବେଶ୍ ଭଲ ।

ସୁଖାମ୍ନେ : ତାହେଲେ ଆଉ ଆର୍ଗୁମେଣ୍ଟର ପ୍ରଶ୍ନ ନାହିଁ, କଅଣ କହୁଚନ୍ତି ମିସେସ୍ କାଶୀକର ?

ମିସେସ୍ କାଶୀକର : ଆପଣ ଯଦି କହୁଛନ୍ତି ହେଉ, ତା'ହାଲେ ଆମେ ଅନ୍ତତଃ ଦେଖି ପାରିବା ଜଣେ ସ୍ତ୍ରୀ ଲୋକ ଆସାମୀ ହେଲେ ଟ୍ରାୟାଲ କେମିତି ଗ୍ଭଲେ । (ମିଷ୍ଟର-କାଶୀକରଙ୍କୁ) ଠିକ୍ ନୁହେଁ ? କଅଣ କହୁଛ ? ସେ ଏକ୍ସପିରିଏନ୍ସ ଅନ୍ତତଃ ମିଳିଯିବ ।

ମିଷ୍ଟର କାଶୀକର : (ବ୍ୟଙ୍ଗରେ) ଅଫକୋର୍ସ । ତୁମକୁ ସୁପ୍ରିମ କୋର୍ଟ ଜଜ୍ କରିଦେଲେ ବି ହୁଅନ୍ତା ।

ମିସେସ୍ କାଶୀକର : ମୁଁ କଅଣ ସେଇ ଭାବରେ କହିଲି ?

ସୁଖାମ୍ନେ : ଗୋଟାଏ ଟ୍ରାୟାଲ, ଆଉ ଗୋଟାଏ ଟ୍ରାୟାଲରେ ବିଶେଷ ଫରକ ନଥାଏ; କିନ୍ତୁ ଜଣେ ସ୍ତ୍ରୀ ଲୋକ ଡକ୍‌ରେ ରହିଲେ କେଶ୍‌ର କମ୍ପ୍ଲେକ୍‌ସନ ବଦଳି ଯାଏ । ସେଇଟା ମୋର ଏକ୍‌ସପିରିଏନ୍‌ସ । କଅଣ କହୁଛନ୍ତି କାର୍ଣ୍ଣିକ ?

କାର୍ଣ୍ଣିକ : ଇଟ୍ ଇଜ୍ ଅଲ୍ ରାଇଟ୍ । ମୁଁ ଟିମ୍ ବାହାରେ ନଥାଏ । ମୁଁ ଟିମ୍ ସ୍ପିରିଟ୍ ସବୁବେଳେ ମାନିଥାଏ ।

ମିସେସ କାଶୀକର : ତା'ହେଲେ ଆଜିର ଆସାମୀ ହେବେ ମିସ୍ ବେଣାରେ । କିନ୍ତୁ ଅଭିଯୋଗ କଅଣ ? କିଛି ଏକ ସାମାଜିକ ଗୁରୁତ୍ୱପୂର୍ଣ୍ଣ ବିଷୟ ହେବା ଦରକାର ।

ପୋଙ୍ଗେ : ଠିକ୍—(ଉଠି) ଆଚ୍ଛା, ଆମେ ଗୋଟାଏ କାମ କରିବା । ସମସ୍ତେ ମୋ ପାଖକୁ ଆସନ୍ତୁ ମୁଁ କହୁଛି ।

[ସେମାନଙ୍କୁ ଫ୍ ସ୍ଫ୍ ସ୍ କରି କାଲ୍କୁ ଏକ ପ୍ଲାନ ବତାଇବା । ମଞ୍ଚିରେ ବେଣାରେ ଯାଇଥିବା ରୁମ୍ ଆଡ଼କୁ ଇଙ୍ଗିତ କରୁଥିବା]

ମିଷ୍ଟର କାଣୀକର : ସେକଡ଼େ, କୋର୍ଟ ଆଡୁଗ ଆରେଞ୍ଜ ହେଲନାହିଁ ?

ସେକଡ଼େ : ହଁ ସାର୍, ହୋଇଗଲାଣି । ( ବ୍ୟସ୍ତ ହୋଇ ଉଠିବା )

କାର୍ତ୍ତିକ : ସେକଡ଼େ, କେଉଁ ଜନଷ କେଉଁଠି ରହିବ, ସେଇଥି-ପାଇଁ ମୁଁ ଗୋଟାଏ ଗ୍ରାଉଣ୍ଡ ପ୍ଲାନ କରିଥିଲି ।

ସେକଡ଼େ : (ବିରକ୍ତ ହୋଇ) ଆପଣଙ୍କର ଏ ଥିଏଟ୍ରିକାଲ କଥା ଗୁଡ଼ାକ ମୁଁ ବୁଝି ପାରେନାହିଁ । ସେ ସବୁରେ ମୋର ଅଭ୍ୟାସ ନାହିଁ ।

[ସମସ୍ତେ ବଭିନ୍ନ ଫର୍ଣ୍ଣିଚର କୋର୍ଟ ପରି ସଜାଇବାରେ ଲାଗିଯିବା । ପୋଙ୍ଗେ ସେଥିର ନେତୃତ୍ୱ ନେବା । କାଣୀକର ସବୁ ତଦାରଖ କରୁଥାଆନ୍ତି । ପୋଙ୍ଗେର ନିର୍ଦ୍ଦେଶରେ ସେକଡ଼େ ପ୍ଲାଟଫର୍ମ ଉପରେ ଥିବା ସାମାନପତ୍ର ମଧ୍ୟରୁ ବେଣାରଙ୍କ ଭ୍ୟାନିଟି ବ୍ୟାଗ ଉଠାଇବା ଏବଂ ତାହାକୁ ବାଁ ପଟରେ ଏକ ଷ୍ଟୁଲ ଉପରେ ରଖିବା । ସବୁ ଫର୍ଣ୍ଣିଚର ଆରେଞ୍ଜ ହୋଇଯିବା ପରେ ପୋଙ୍ଗେ ଓ କାଣୀକର ଯାଇ ଭିତର ରୁମ୍ କବାଟ ପାଖରେ ଠିଆ ହେବା । ଅନ୍ୟମାନେ ବାଁ ପଟେ ଉଇଙ୍ଗସ୍ ଭିତରକୁ ଚାଲିଯିବା)

ମିଷ୍ଟର କାଣୀକର : (ଅନ୍ୟମାନଙ୍କୁ) ଠିକ୍ ସମୟରେ ମୁଁ ଆପଣମାନଙ୍କୁ ସିଗ୍ନାଲ ଦେବି ।

[ବେଣାରେ ଡଉଲଆରେ ମୁହଁ ପୋଛୁ ପୋଛୁ ଓ ଗୀତ ଟାଇ ଗାଇ ଅନ୍ୟ ରୁମ୍‌ରୁ ଆସିବା । ସେ ଖୁବ୍ ଖୁସି ମନରେ ଥିବା]

ବେଣାରେ : (ଡଉଲଆ ସାବୁନ ପ୍ରଭୃତି ପ୍ଲାଟଫର୍ମ ଉପରେ ଥିବା ବାସ୍କେଟରେ ରଖି ରଖି ଗୀତ ଗାଉଥିବା)

ପୋଙ୍ଗେ : (ହଠାତ ତାଙ୍କ ଆଗକୁ ଆସି) ମିସ୍ ବେଣାରେ, ଏକ ଗୁରୁତର ଅଭିଯୋଗରେ ଆପଣଙ୍କୁ ଗିରଫ କରାଯାଇ ଆଜ ଏ ଅଦାଲତରେ ଆସାମୀଭାବେ ଠିଆ କରା ଯାଉଛି ।

[ବେଣାରେ ଚମକି ଉଠି ସ୍ଥିର ହୋଇ ଠିଆ ହେବା । ଗୁଣ୍ଡଆଡ଼କୁ ଗୁହିଁବା । ପୋଙ୍ଗେ ତାଙ୍କୁ ଅନାଇ ଥାନ୍ତି । ସେ ବାଁ ପଟର ଉଇଙ୍ଗସ୍ ପାଖକୁ ଯାଇ ପର୍ଦ୍ଦା ଖୋଜିବା ଷ୍ଟୁଲରୁ ଭାନିଟିବ୍ୟାଗ୍ ଉଠାଇବା । ଏହି ସମୟରେ କାର୍ଣ୍ଣିକର ଆସି ବିଗୁରପତି ଆସନରେ ବସିବା । ସେ ଅନ୍ୟମାନଙ୍କୁ ସିଗ୍‌ନାଲ୍ ଦେବା-କାର୍ଣ୍ଣିକ ଓ ରେକଡ୍ରେ ମାରବରେ କାଠଉକ୍ ଆଣି ବେଣାରେ ଚାରିପଟେ ସଜାଇ ଦେବା । ସୁଖାମ୍ପେ ଓକଲ ଗାଉନ୍ ପିନ୍ଧି ପିନ୍ଧି ପ୍ରବେଶ କରିବା ଏବଂ ଓକଲ ଟେବୁଲ ନିକଟରେ ଏକ ଚେୟାରରେ ବସିବା । ଅନ୍ୟମାନେ ନିଜ ନିଜ ସ୍ଥାନରେ ଠିଆ ହେବା । ସାମନ୍ତ ପ୍ରବେଶକର ଦୁଆର

[ମୁହଁରେ ଆଶ୍ଚର୍ଯ୍ୟ ଭାବରେ ଠିଆ ହୋଇଯିବା ]

ମିଷ୍ଟର କାଶୀକର : (ଗଳା ଖଙ୍କାର) ଆପାମୀ ମିସ୍ ବେଣୀରେ, ଭାରତୀୟ ପେନାଲକୋଡ୍ର ୩୦୨ ଧାରା ଅନୁଯାୟୀ ତମକୁ ଶିଶୁହତ୍ୟା ଅପରାଧରେ ଅଭିଯୁକ୍ତ କରା ଯାଇଛି । ତମେ ଦୋଷୀ ନା ନିର୍ଦ୍ଦୋଷ ? କୁହ ।

[ବେଣାରେ ହତବାକ୍ ହୋଇ ଠିଆ ହେବା । ଏକ ସ୍ତବ୍ଧ ବାତାବରଣ— ଅଭ୍ତପୂର୍ବ ଗମ୍ଭୀରତା ]

# ଦ୍ୱିତୀୟ ଅଙ୍କ

[ଏକା ହଲ । ପ୍ରଥମ ଅଙ୍କ ଶେଷର
ପରିସ୍ଥିତି ସମାନ ରହିଛି]

କାଶୀକର : (ବିଚାରପତି ଭାବେ ଗାମ୍ଭୀର୍ଯ୍ୟ ସହ ବସି) ଆସାମୀ
ମିସ୍ ବେଣାରେ, ଭାରତୀୟ ପେନାଲ କୋଡ୍‌ର
୩୦୨ ଧାରା ଅନୁଯାଇ ତମକୁ ଶିଶୁ ହତ୍ୟା ଅପରାଧରେ
ଅଭିଯୁକ୍ତ କରାଯାଇଛି । ତମେ ଦୋଷୀ ନା ନିର୍ଦ୍ଦୋଷ ?

[ଅତି ଗମ୍ଭୀର ପରିସ୍ଥିତି, ମିସ୍ ବେଣାରେ
ଏକ ଚେୟାରକୁ ଆଶ୍ରୟକରି ସ୍ଥିରଭାବେ
ଠିଆ ହୋଇଥିବା]

ସାମନ୍ତ : (ଦ୍ୱାର ପାଖରେ ଠିଆରହି କାର୍ତ୍ତିକଙ୍କୁ ଧୀର ସ୍ୱରରେ
କହିବା) ହେଇଟି ପାନ ସିଗାରେଟ୍ ।

[ହଠାତ୍ ବାତାବରଣ ହାଲୁକା
ହୋଇଯିବା]

ମିସେସ୍ କାଶୀକର : ମୋ ପାଇଁ ଖଣ୍ଡେ ମିଠାପାନ ।

କାର୍ତ୍ତିକ : ମୋର ଉଇଲ୍‌ସ ପ୍ୟାକେଟ ।

ପୋଙ୍କେ : ସାମନ୍ତ, ମତେ ଖଣ୍ଡେ ସ୍ପେଶାଲ ପାନ ।

ସୁଖାତ୍ମେ : ଖଣ୍ଡେ ପାନ । ଆଉ ଏକ ପ୍ୟାକେଟ ବିଡ଼ି । ଆପଣଙ୍କର
କଅଣ ଦରକାର ମିଷ୍ଟର କାଶୀକର ?

ମିଷ୍ଟର କାଶୀକର : ମିଠା ପାନ ।

[ବେକଡ଼େ ସାମନ୍ତ ଠାରୁ ମିଠା ପାନ
ନେଇ ମିଷ୍ଟର କାଶୀକରଙ୍କୁ ଦେବା]

ସୁଖାମ୍ନେ : (ବେଣାରେଙ୍କୁ ପାନ ଯାଚି) ମିଷ୍ଟ ବେଣାରେ ଖଣ୍ଡେ ପାନ ନଅନ୍ତୁ ।

ବେଣାରେ : (ଏ ସମୟରେ ଚେୟାରରେ ବସିପଡ଼ି ଥାନ୍ତି) ଏଁ ? Yes, I mean, no. Thanks.

ସୁଖାମ୍ନେ : ଆପଣ ହଠାତ୍ ଏମିତି ଗମ୍ଭୀର କାହିଁକି ? ଏସବୁ କେବଳ ଗୋଟାଏ ଗେମ୍ । ଆପଣ ଏତେ ସିରିୟସ୍ କାହିଁକି ?

ବେଣାରେ : (ହସିବାକୁ ଚେଷ୍ଟାକରି) ସିରିୟସ୍ କିଏ ? ମୁଁ ତ ବିଲ୍‌କୁଲ୍ ହାଲୁକା ମନରେ ରହିଛି । କୋର୍ଟ'ର ରାଇଟ୍ ଆଟ୍‌ମସ୍‌ଫିୟର ଆଣିବା ପାଇଁ ଜାଣିଶୁଣି ଟିକିଏ ସିରିୟସ୍ ହୋଇ ଯାଇଥିଲି । ଏମିତି ଏକ ଟ୍ରାୟାଲ ପାଇଁ ମୁଁ ଉଦ୍‌ବେଗିତ କାହିଁକି ?

ସାମନ୍ତ : (କାର୍ତ୍ତିକ ପାଇଁ ସିଗାରେଟ୍ ଲଗାଇ) ଏଠି ଏବେ କଅଣ ମଜାକଥା ହେଉଥିଲା ?

କାର୍ତ୍ତିକ : (ସିଗାରେଟ୍ଟ ଟାଣି) ମଜା କଅଣ ?

ସାମନ୍ତ : ନାଇଁ ମିଷ୍ଟର କାଣୀକର କଅଣ ଅଭିଯୋଗ କଥା କହୁଥିଲେ ? ମୁଁ ସବୁ ଠିକ୍ ବୁଝି ପାରିଲି ନାହିଁ । ମୁଁ ମୂର୍ଖଲୋକ ତ ।

କାର୍ତ୍ତିକ : ଅଭିଯୋଗ । ଏଇ ଶିଶୁହତ୍ୟାର ଅଭିଯୋଗ ।

ସାମନ୍ତ ! ମାନେ କଅଣ ? ମତେ ଟିକିଏ ବୁଝେଇ ଦେବେ ।

ସୁଖାମ୍ନେ : ମାନେ ସନ୍ତାନ ଜନ୍ମ ହେଉ ହେଉ ତାକୁ ମାରିଦେବାର ଅଭିଯୋଗ ।

ସାମନ୍ତ : ହେ ଭଗବାନ ! ବଡ଼ ଭୟାନକ ଅଭିଯୋଗ । ଆମ ଗାଁରେ ଏମିତି ଘଟିଥିଲା—ପ୍ରାୟ ଦୁଇବର୍ଷ ତଳେ । ବିଚାରୀ ଜଣେ ବିଧବା ।

ସୁଖାମ୍ନେ : ସତେ ? ସେ caseରେ ଓକିଲ କିଏ ଥିଲା ? ମିଷ୍ଟର କାଣୀକର, ଆପଣ ବେଶ୍ ଠିକଣା ଅଭିଯୋଗ

ବାଣ୍ଟୁଥିଲେ । ଏ ଫାଷ୍ଟକ୍ଲାସ ଗୃଙ୍ଗ । ଏମିତି ଏକ ଜୋରଦାର ଅଭିଯୋଗ ନଥିଲେ, କେସରେ ମଜା ନଥାଏ ।

ମିଷ୍ଟର କାଶୀକର : ଆଜ୍ଞା ଗୋଟାଏ କଥା ଲକ୍ଷ୍ୟ କରିଛ ସୁଖାନେ୍ଦ ? ସାମାଜିକ ଦୃଷ୍ଟିକୋଣରୁ ମଧ୍ୟ ଏ ଗୃଙ୍ଗର ଗୁରୁତ୍ୱ ରହିଛି । ଶିଶୁହତ୍ୟା ବାସ୍ତବିକ୍ ଏକ ବଡ଼ ସାମାଜିକ ଗୁରୁତ୍ୱଥିବା ବିଷୟ । ସେଇଥିପାଇଁ ମୁଁ ଜାଣିଶୁଣି ଏ ଅଭିଯୋଗ ବାଛିଲି । କୌଣସି ବିଷୟରେ ସମାଜର ମଙ୍ଗଳକଥା ମୁଁ କେବେ ଭୁଲି ନାହିଁ । ମିସ୍‌ବେଣାରେ ଏଥର ଉଠନ୍ତୁ । ବେ୍ଳକଡ଼େ ମୋ ହାତୁଡ଼ି ଆଣ ।

[ବେ୍ଳକଡ଼େ ହାତୁଡ଼ି ଆଣି ଟେବୁଲ ଉପରେ ରଖିବା]

ଅବଶ୍ୟ ଏଇଟା ଏବେ ନଥିଲେ ବି ଚଳନ୍ତା । କିନ୍ତୁ ମୁଁ ଦେଖିଥିଲି ତୁ ମନେକରି ଆଣିଛୁ କି ନାହିଁ । (ଟେବୁଲ୍‌ରେ ହାତୁଡ଼ିପିଟି) Now ଟୁ ବିଜନେସ୍ । ବେଶ୍ ଆରମ୍ଭ କରନ୍ତୁ ମିଷ୍ଟର ସୁଖାନେ୍ଦ—ଅଧିକସ୍ୟ ଅଧିକମ୍ ଫଳମ୍ । ଆଚ୍ଛା ପ୍ରଥମେ ମୋର ଇପ୍ସର ପିକ୍ —(ପକେଟ ଖୋଜି ଲଗାଇବା)

ସୁଖାନେ୍ଦ : (ଓକିଲ ଗାଉନ୍ ଠିକ୍‌ଠାକ୍ କରୁକରୁ ପାନ ଚୋବାଉ ଚୋବାଉ) ମି. ଲର୍ଡ଼ ! ଅଦାଲତ ଯେମିତି ସୁରୁ-ଖୁରୁରେ ଚାଲିବ, ସେଇଥିପାଇଁ ମୁଁ ନିବେଦନ କରୁଛି କି ପ୍ରଥମେ ସମସ୍ତେ ପାନଛେପ ପକେଇ ଆସିବାକୁ ଅଦାଲତ ପନ୍ଦର ସେକେଣ୍ଡ ନିମନ୍ତେ ମୁଲତବୀ ରଖାଯାଉ ।

ମିଷ୍ଟର କାଶୀକର : (ଗାମ୍ଭୀର୍ଯ୍ୟପୂର୍ଣ୍ଣ ପାନଟିକୁ ବ୍ୟସ୍ତ ମୁହଁରୁ ଜଲଦିରେ ଫୋପାଡ଼ି) ଆସାମୀ ପକ୍ଷର ଓକିଲ ଏ ବିଷୟରେ ପ୍ରଥମେ ନିଜ ମତାମତ ପ୍ରକାଶ କରନ୍ତୁ ।

ସୁଖାନ୍ନେ : (ଆସାମୀ ପକ୍ଷର ଓକିଲ ହୋଇ) ମି. ଲର୍ଡ଼ ! ସରକାରୀ ପକ୍ଷ ଓକିଲଙ୍କ ଏ ପ୍ରସ୍ତାବକୁ ମୁଁ ଦୃଢ଼ ବିରୋଧ କରୁଛି । ପାନ ଛେପ ପକେଇବାକୁ ମାତ୍ର ଦଶ ସେକେଣ୍ଡ ଲୋଡ଼ା । ଅଥଚ ସରକାରୀ ଓକିଲ, ପନ୍ଦର ସେକେଣ୍ଡ ମାଗିବାଦ୍ୱାରା ସ୍ପଷ୍ଟ ହୋଇଯାଉଛି କି, ଅଯଥା ସମୟ ନଷ୍ଟ କରିବା ତାଙ୍କର ମତଲବ । ଏହା ମୋ ମକ୍କେଲଙ୍କ ପକ୍ଷରେ ଅତ୍ୟନ୍ତ କ୍ଷତିକର । ତେଣୁ ମୋ ମକ୍କେଲଙ୍କ ପକ୍ଷରୁ ମୁଁ କହୁଛି କି, ମାତ୍ର ଦଶ ସେକେଣ୍ଡ ଦିଆଯାଉ ।

ବେଣାରେ : (ନିଜକୁ ସମ୍ଭାଳି ନପାରି) Yes, or else No— only nine and half seconds ।

ମିଷ୍ଟର କାଶୀକର : ମିସ୍ ବେଣାରେ, କୋର୍ଟ ବସିଥିବାବେଳେ ଆସାମୀ ମଝିରେ କିଛି କହିବା ଅନୁଚିତ । ଅବଶ୍ୟ ଆସାମୀ ଜେଲରେ ସାମିଲ୍ ଥିଲେ, ସେ ଅଲଗାକଥା; କିନ୍ତୁ ଅଦାଲତର ଆଦବ କାଇଦା କ'ଣ ମୁଁ ଆପଣଙ୍କୁ ପୁଣି ଶିଖାଇବି ?

(କାର୍ତ୍ତିକକୁ ଗମ୍ଭୀରଭାବେ ଡାକି)

କୋର୍ଟର clerk, ଅଦାଲତ ଆଗରେ ଯେଉଁ ପ୍ରଶ୍ନ ଉପୁଜି ଉଠିଛି ସେ ସମ୍ପର୍କରେ ପୂର୍ବରୁ କଅଣ କଅଣ ନଜିର ଅଛି ଉପସ୍ଥାପିତ କର ।

କାର୍ତ୍ତିକ : (ସିଗାରେଟ ମୁହଁରୁ ବାହାରକରି ଓ ବହୁପରିମାଣ ଧୂଆଁ ଛାଡ଼ି) ପାନଖିଆ ଯାଉଥିବାବେଳେ ଅଦାଲତ ସାଧାରଣତଃ ବସିଲ ନଥାଏ । ସେ ଦୃଷ୍ଟିରୁ ଏ ସମ୍ପର୍କରେ ଆଗରୁ କୌଣସି ନଜିର ନାହିଁ । ତା'ଛଡ଼ା ବିଚାରପତି ନିଜେ ଅଦାଲତରେ ପାନ ଚୋବାଇବା ଗୋଟାଏ ନୂଆକଥା ।

ମିଷ୍ଟର କାଶୀକର : ଆସାମୀ ପକ୍ଷର ଉକିଲ, ଦଶ ସେକେଣ୍ଡ ମଧ୍ୟରେ ପାନଛେପ ପକାଇ ଆସିବା ସମ୍ଭବ ବୋଲି ଆପଣ ଅଦାଲତରେ ପ୍ରମାଣ କରି ଦେଇପାରିବେ କି ?

ସୁଖାତ୍ମେ : ନିଶ୍ଚୟ । (ବାହାରକୁ ଯିବା ଓ ପାନଛେପ ପକାଇ ଆସି, ଦ୍ୱାରବନ୍ଦ କରିବା) ଠିକ୍ ଦଶ ସେକେଣ୍ଡ ମି. ଲର୍ଡ୍ ।

ମିଷ୍ଟର କାଶୀକର : ଉଇ ମଷ୍ଟ ସି. ଫର ଆୱାର ସେଲ୍‌ଭ୍‌ସ୍

[ପାନଛେପ ପକାଇବା ପାଇଁ ଭିତର ଘରକୁ ଯିବା ।]

ବେଣାରେ : (ଦୀର୍ଘ ନିଶ୍ୱାସନେଇ) ମିଷ୍ଟର କାର୍ତ୍ତିକ, ଏଇଟା ଅଦାଲତ ନା ସ୍ପିଟିଙ୍ଗ୍ କଣ୍ଟେଷ୍ଟ ?

[କାର୍ତ୍ତିକ ସେଥିପ୍ରତି ଦୃଷ୍ଟି ନଦେବା]

ସାମନ୍ତ : (ଏ ମଧ୍ୟରେ କାର୍ତ୍ତିକଙ୍କୁ) ସାର୍, ଅସଲ ଅଦାଲତ୍ କଅଣ ଠିକ୍ ଏମିତି ଚାଲୁଥାଏ ? ବେଶ୍ ମଜାଳିଆ ତ ?

କାର୍ତ୍ତିକ : (ସିଗାରେଟ ଧୂଆଁ ଛାଡ଼ି ନକଲି ଗମ୍ଭୀରତା ସହ) ଅଦାଲତ ଅବମାନନା ହୋଇଯିବ, ଖାଲି ଦେଖ କଅଣ ହେଉଛି ।

[ପୋଙ୍ଗେଙ୍କୁ ଆଖିରେ ଇଙ୍ଗିତ ଦେବା]

ମିଷ୍ଟର କାଶୀକର : (ପ୍ରବେଶକରି) କ୍ଲର୍କ ଅଫ୍ ଦି କୋର୍ଟ, କେତେ ସମୟ ଲାଗିଲା ?

କାର୍ତ୍ତିକ : (ଘଡ଼ିଦେଖି) ଏଁ—ମୁଁ ଜାଣିନି ତ ।

ମିସେସ୍ କାଶୀକର : ମୁଁ କହୁଛି, ପନ୍ଦର ସେକେଣ୍ଡ ।

ସୁଖାତ୍ମେ : (ସରକାରୀ ଉକିଲ ସାଜି) ଦେଯାର ନୋଟ ୟୁ, ଦଶ ସେକେଣ୍ଡ ନୁହେଁ, ପନ୍ଦର ସେକେଣ୍ଡ । ତାହା ଠିକ୍

ଓ୍ୱାନ୍ ଫୋର୍ଥ ଅମ୍ ଏ ମିନଟ୍ । ମୁଁ ଯେତକ କହୁଥିଲି, ଠିକ୍ ସେତକ ମି. ଲର୍ଡ ।

ମିଷ୍ଟର କାଶୀକର : (ଗମ୍ଭୀରତା ବଜାୟ ରଖି) Yes. ପାନଛେପ ପକେଇବା ବିଷୟ ନେଇ ଏ ମଧ୍ୟରେ କୋର୍ଟର ଅଧମିନଟ୍ ସମୟ ନଷ୍ଟ ହୋଇଗଲାଣି । ତେଣୁ କୋର୍ଟ ବର୍ତ୍ତମାନ ରାୟ ଦେଉଛନ୍ତି କି, ଏଥିର କୋର୍ଟର କାର୍ଯ୍ୟରେ ଆଉ ବିଳମ୍ବ କରାଯାଇ ନପାରେ । ଅବଶ୍ୟ ଉପସ୍ଥିତ ବ୍ୟକ୍ତିମାନେ କୋର୍ଟର କାର୍ଯ୍ୟରେ ବାଧା ସୃଷ୍ଟି ନକରି ନିଜେ ନିଜର ସୁବିଧା ଅନୁଯାୟୀ ଯାଇ ପାନଛେପ ପକେଇ ଆସିପାରନ୍ତି ।

ପୋଙ୍ଗେ : (ଉଠି) ହିଅର, ହିଅର ।

କାଶୀକର : (ଟେବୁଲ ବାଡେଇ) ସାଇଲେନ୍‌ସ, ସାଇଲେନ୍‌ସ ମଷ୍ଟ ବି ଅବଜର୍ଭଡ ।

ମିସେସ୍ କାଶୀକର : (ସାମନ୍ତଙ୍କୁ) ସାମନ୍ତ, ଏସବୁ ପାନଛେପ ବିଷୟରେ ଆଲୋଚନା କେବଳ ମଜାରେ କରାଯାଉଥିଲା; କିନ୍ତୁ ଏ ଆଲୋଚନାର ଆଦବ କାଏଦା ପ୍ରତି ଆପଣ ଭଲ ଦୃଷ୍ଟି ରଖିଥିବେ । ଏ କ୍ଷେତ୍ରରେ ବଡ଼ କଥା ହେଉଛି, ଆପଣ ଯେ କୌଣସି ବିଷୟପାଇଁ, କୋର୍ଟଙ୍କ ଅନୁମତି ନେବା ଦରକାର । ଆପଣ ଏସବୁ ଭଲକରି ଲକ୍ଷ୍ୟ ନକଲେ, ରାତିରେ ଅସଲ ପ୍ରୋଗ୍ରାମ ବେଳେ ଭୁଲକରି ଦେଇପାରନ୍ତି ।

ସାମନ୍ତ : (ଉତ୍ସାହରେ) ନାଁ, ନାଁ, ମୁଁ ଠିକ୍ ଲକ୍ଷ୍ୟ କରୁଛି, କିନ୍ତୁ—

ମିଷ୍ଟର କାଶୀକର : (ଟେବୁଲ ବାଡେଇ) ସାଇଲେନ୍‌ସ । ସାଇଲେନ୍‌ସ ମଷ୍ଟ ବି ଅବଜର୍ଭଡ୍ ହ୍ୱାଇଲ ଦ' କୋର୍ଟ ଇଜ୍ ଇନ୍ ସେସନ୍ । ତମେ ଘରେ ଯେମିତି ପାଟି ବନ୍ଦକରି ରହିପାରନା, ଏଠି ବି ସେମିତି ।

ମିସେସ୍ କାଣୀକର : ମୁଁ ଖାଲି ଏ ସାମନ୍ତଙ୍କୁ ବତାଇ ଦଉଥିଲି ।

ସୁଖାମ୍ବେ : ଛୁଡ଼ନ୍ତୁ ମିସେସ୍ କାଣୀକର । ମିଷ୍ଟର କାଣୀକର ଜୋକ୍ କରୁଛନ୍ତି ।

ମିସେସ କାଣୀକର : ତା' ବୋଲି ମତେ ଯେଉଁଠି ସେଇଠି ଏମିତି ସେ ଶାସନ କରିବେ ?

ବେଣାରେ : (କ୍ଲାନ୍ତଭାବରେ ରୋକଡେଙ୍କୁ) ଏଇ ବାଲୁ !

ରୋକଡେ : (ବିରକ୍ତ ହୋଇ, କିନ୍ତୁ ନିଜକୁ ସମ୍ଭାଳି) ମୋତେ ବାଲୁ ବୋଲି ଡାକ ନାହିଁ ।

ମିଷ୍ଟର କାଣୀକର : (ଗଳାଖଙ୍କାରି ଓ ଟେବୁଲ ବାଡ଼େଇ) Now back to ଶିଶୁହତ୍ୟା – ଆସାମୀ ମିସ୍ ବେଣାରେ, ତମ ଉପରେ ଆସିଥିବା ଅଭିଯୋଗ ତମେ ସ୍ୱୀକାର କରୁଛ ନାଁ ନାହିଁ ?

ବେଣାରେ : ଆପଣଙ୍କ ଉପରେ ଏମିତି ଅଭିଯୋଗ ଅସିଲେ, ଆପଣ କଅଣ କରିବେ ? ସ୍ୱୀକାର ନା ଅସ୍ୱୀକାର ?

ମିଷ୍ଟର କାଣୀକର : (ହାତୁଡ଼ି ପିଟି) Order, Order, ଅଦାଲତର ମର୍ଯ୍ୟାଦା ସବୁବେଳେ ରକ୍ଷାକରାଯିବା ଦରକାର । ତା' ନହେଲେ ସାମନ୍ତ ଅଦାଲତର କାରବାର ଠିକ୍ ଠିକ୍ ଅଭ୍ୟାସ କରିପାରିବେ ନାହିଁ ।

ବେଣାରେ : ଅଦାଲତର କାରବାର, ନାଁ ଶିଶୁହତ୍ୟା କାରବାର ? ଆପଣଙ୍କର ଏସବୁ କଥା ମୁଁ ଆଦୌ ପସନ୍ଦ କରେ ନାହିଁ । ଶିଶୁହତ୍ୟା ବଦଳରେ ଆପଣ ମୋ ଉପରେ ସାଧାରଣ ସମ୍ପତ୍ତି ଅପହରଣ ଅଭିଯୋଗ କାହିଁକି ଆଣୁନାହାନ୍ତି ? ତା ବରଂ ଅଧିକ ଭଲ ହୁଅନ୍ତା—

ମିସେସ କାଶୀକର : ମୁଁ ତାହା ଭାବୁନାହିଁ । ଶିଶୁହତ୍ୟା ଅଭିଯୋଗ କଅଣ ଖରାପ ?

ବେଣାରେ : (ନିଜଚୌକି ଉପରେ ହାତବାଡେଇ) ଅର୍ଡର, ଅର୍ଡର, ଅଦାଲତର ମର୍ଯ୍ୟାଦା ରକ୍ଷା କରନ୍ତୁ । ଘରେ ଆପଣ ପାଟି ବନ୍ଦକରି ରହିପାରନ୍ତି ନାହିଁ, ଏଠି କିନ୍ତୁ ନୁହେଁ । (ଓକିଲପରି) ମି. ଲର୍ଡ଼ ! ମାନ୍ୟବର ବିଚାରପତିଙ୍କ ସହଧର୍ମିଣୀଙ୍କୁ ପୂର୍ବରୁ ଓ୍ୱାର୍ନ କରି ଦିଆଯାଉ । ସେ କେବେ ଶିଶୁହତ୍ୟା କରି ନାହାନ୍ତି ବା, ମି. ଲର୍ଡ଼ଙ୍କୁ ଛାଡ଼ କୌଣସି ସାଧାରଣ ସମ୍ପତ୍ତି ଅପହରଣ କରିନାହାନ୍ତି ।

ମିସେସ୍ କାଶୀକର : ବନ୍ଦକର ବେଣାରେ, ଯଥେଷ୍ଟ ହେଲା ।

ବେଣାରେ : (ଧୀର କଣ୍ଠରେ ରୋକଡ଼େଙ୍କୁ) ବାଲୁ ।

[ବାଲୁ ଝରକାରେ ଦାନ୍ତ କାମୁଡ଼ିବା]

ସାମନ୍ତ : (ମିସେସ୍ କାଶୀକରଙ୍କୁ) ବାଃ ମିସ୍ ବେଣାରେ ତ ବେଶ୍ ମାତ କରିଦେଉଛନ୍ତି ।

ପୋଣ୍ଡେ : (ଗମ୍ଭୀର ଭାବେ) ସବୁ ବିଷୟରେ ।

ମିଷ୍ଟର କାଶୀକର : ଆସାମୀ ମିସ୍ ବେଣାରେ, ତମେ ଓକିଲଙ୍କ କାମ ନିଜ ହାତକୁ ନେଇ ଅଦାଲତର କାର୍ଯ୍ୟରେ ବାଧା ସୃଷ୍ଟି କରିଛ, ସେଥିପାଇଁ ତମକୁ ସତର୍କ କରାଇ ଦିଆଯାଉଛି ।

ବେଣାରେ : (ନିଜ ସ୍ଥାନରୁ କାଶୀକରଙ୍କ ପାଖକୁ ଯାଇ) Thanks. ଏଥିପାଇଁ ଆପଣଙ୍କୁ ଖଣ୍ଡେ ପାନ ଦେଉଛି ।

କାର୍ତ୍ତିକ ; ବାସ୍ ବାସ୍, ସେତିକି ଥାଉ, ସିରିୟସଲି ଯଦି କିଛି କରାନଯାଏ, ତା' ହେଲେ ସବୁକଥା ଖତମ । ମିସ୍

ବେଣାରେ ଅନ୍ତତଃ ଏଇ ସାମନ୍ତ କୋର୍ଟର ଆଦାବ କାଇଦା ଯେମିତି କିଛୁ ବୁଝି ପାରିବେ ସେଥିପାଇଁ ଟିକିଏ ସିରିୟସ୍ ହୁଅନ୍ତୁ, କୋର୍ଟର କିଛି ନିୟମ ପାଳନ କରନ୍ତୁ ।

ସୁଖାମ୍ବେ : ତା' ନହେଲେ ତ ସବୁ ନିହାତି ପିଲାଖେଳ ହୋଇଯିବ । କିଛି ସିରିୟସ୍ ହେବା ଦରକାର ।

ବେଣାରେ : (ନିଜସ୍ଥାନକୁ ଫେରି) ନାଓ, ବ୍ୟାକ୍ ଟୁ ଇନ୍‌ଫାଣ୍ଟି-ସାଇଡ଼୍ । ମି. ଲର୍ଡ ! ମୋର ଭୁଲ ହୋଇଥିଲା । ଜଣେ ଅଭିଯୁକ୍ତ ଆସାମୀ ବିଗ୍ଧରପନ୍ତ ମହୋଦୟଙ୍କୁ ଏମିତି ସମ୍ମାନ ଦେଖାଇବା ଉଚିତ ନଥିଲା । ୱେଲ୍, ଆଇ ପ୍ଲିଡ଼୍ ନୋ ଗିଲଟି । ମୁଁ ମୋ ବିରୁଦ୍ଧରେ ଲଗାଯାଇଥିବା ଅଭିଯୋଗ ଅସ୍ୱୀକାର କରୁଛି । ମାଛିଟିଏ ବି ମୁଁ ମାରିପାରେ ନାହିଁ । ଆଉ ଶିଶୁହତ୍ୟା ! ହଁ, ଆଜି ସକାଳେ classରେ ଜଣେ ଦୁଷ୍ଟ ପିଲା ଉପରେ ରାଗି, ତାକୁ ମାଡ ଦେଇଥିଲି । କିନ୍ତୁ ଉପାୟ କଅଣ ଥିଲା ? ପିଲାଟା ବଡ଼ ଦୁଷ୍ଟାମୀ କରୁଥିଲା ଯେ—

ମିଷ୍ଟର କାଶୀକର : ରୋକଡ଼େ, ଶପଥ ନେବାପାଇଁ ବହି କାହିଁ ?

[ରୋକଡ଼େ ତରବରଭାବେ ଏକ ମୋଟା ବହିନେଇ ମିଷ୍ଟର କାଶୀକରଙ୍କ ନିକଟରେ ଏକ ଷ୍ଟୁଲ୍‌ରେ ରଖିବା]

ମିଷ୍ଟର କାଶୀକର : ଆଉ ସାକ୍ଷୀ ଠିଆ ହେବାପାଇଁ ଜାଗା ?

[ରୋକଡ଼େ ବ୍ୟବସ୍ଥା କରିବାକୁ ଯିବା ]

ମିସେସ୍ କାଶୀକର : (ସାମନ୍ତଙ୍କୁ) ସବୁ ଦେଖୁଥାନ୍ତୁ । ଏହାପରେ ସରକାରୀ ବକ୍ତୃତା—ମାନେ ସରକାରୀ ଓକିଲଙ୍କ ବକ୍ତୃତା—

ସୁଖାମ୍ବେ : (ଦୁଇହାତ, ମୁଣ୍ଡ ପଛକୁ ଛନ୍ଦି ଏବଂ ଦୁଇ ଗୋଡ଼ ଆଉ ଏକ ଚୌକି ଉପରେ ଲଗାଇ ଦେଇ ଆରାମରେ ବସିଥିବା ଅବସ୍ଥାରୁ ଆସ୍ତେ ଆସ୍ତେ ଉଠି)

ମି. ଲର୍ଡ ! ଆସାମୀ ବିରୁଦ୍ଧରେ ଆସିଥିବା ଅଭିଯୋଗ (କାର୍ତ୍ତିକ ସିଗାରେଟରୁ ବଡ଼ରେ ନିଆଁ ଲଗାଇ ଓ ମୂଳାଏ ଧୂଆଁ ଛାଡ଼ି) ଅତ୍ୟନ୍ତ ଗୁରୁତର । ମାତୃତ୍ୱ ଏକ ପବିତ୍ର ଜିନିଷ ।

ବେଣାରେ : ଆପଣ କେମିତି ଜାଣିଲେ ? (ସମସ୍ତଙ୍କ ମୁହଁର ଭାବକୁ ଲକ୍ଷ୍ୟକରି) ଅର୍ଡ଼ର ଅର୍ଡ଼ର—

[ପୋଙ୍ଗେ ବିରକ୍ତ ହୋଇ ଅନ୍ୟରୁମକୁ ଉଠିଯିବା]

ମିଷ୍ଟର କାଶୀକର : ଆସାମୀ ମିସ୍ ବେଣାରେ ! ଅଦାଲତ କାର୍ଯ୍ୟରେ ବାଧା ସୃଷ୍ଟି କରିଥିବାରୁ ତମକୁ ପୁଣି ଥରେ ମୁଁ ତାଗିଦ୍ କରି ଦେଉଛି । ହଁ, ସରକାରୀ ପକ୍ଷ ଓକିଲ, ଆପଣଙ୍କ ଆର୍ଗୁମେଣ୍ଟ ଚାଲୁ ରଖନ୍ତୁ ।

ସୁଖାତ୍ମେ : ମାତୃତ୍ୱ ଅତ୍ୟନ୍ତ ପବିତ୍ର । ତା'ଛଡ଼ା ମାତୃତ୍ୱର କଳ୍ପନା ପଛରେ ଏକ ବଡ଼...ମାନେ ମହାନ୍ ଭାବଧାରା ରହିଛି । ନାରୀକୁ ଆମେ ସନ୍ତାନର ମାତା ମନେକରୁ । ଆମ ସଂସ୍କୃତିରେ ତେଣୁ ନାରୀ ଜାତିକୁ ପୂଜା କରାଯାଏ । ଆମେ ଆମ ପିଲାଙ୍କୁ ମୂଳରୁ ହିଁ ଶିକ୍ଷା ଦେଇଥାଉ— ମାତୃଦେବୋଭବ ! ମାଆ ଉପରେ ବଡ଼ ଦାୟିତ୍ୱ ରହିଥାଏ । ନିଜ ସନ୍ତାନର ସୁରକ୍ଷା ପାଇଁ ସେ ନିଜ ଜୀବନକୁ ମଧ୍ୟ ବିପନ୍ନ କରିବାକୁ ପଛଘୁଞ୍ଚା ଦିଏ ନାହିଁ ।

ମିଷ୍ଟର କାଶୀକର : ଆପଣ ଆଉ ଏକ କଥା ଭୁଲିଗଲେ । ସଂସ୍କୃତରେ ବାକ୍ୟ ଅଛି—ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ—

ମିସେସ୍ କାଶୀକର : (ଉତ୍ସାହରେ) ତା' ସାଙ୍ଗକୁ ମଧ୍ୟ ବେଶ ଜଣାଶୁଣା— ମାଆନାମ କେଡ଼େ ଦୁଃଖ ପାଶୋରା ।

ବେଣାରେ : ଅର୍ଡ଼ର, ଅର୍ଡ଼ର, ଏସବୁ ସ୍କୁଲ ପିଲାଙ୍କ କୌଣସି ରଚନାଖାତାରୁ ନିଆଯାଇଥିବା ଉଦ୍ଧୃତାଂଶ ।

(ପରିହାସ ଢଙ୍ଗରେ ଜଣକମାନ୍ଦା) ଆସାମୀ ମିସ୍ ବେଣୀରେ, ତମେ ଅଦାଲତର କର୍ତ୍ତୃତ୍ୱକୁ ପୁଣି ଅବମାନନା କଲ । ତମକୁ ଆଉ ଥରେ ତାଗିଦ୍ କରି ଦିଆଯାଉଛି ।

[ଟେବୁଲ୍‌ରେ ହାତୁଡ଼ି ବାଡ଼େଇବାର ଅଭିନୟ କରିବା]

ସୁଖାମ୍ରେ : ଆପଣ ମତେ ସେ ଶ୍ଳୋକ ସ୍ମରଣ କରାଇଦେବାରୁ ମୁଁ ଆପଣଙ୍କ ପ୍ରତି ଅତ୍ୟନ୍ତ କୃତଜ୍ଞ ମି. ଲର୍ଡ ! ସଂକ୍ଷେପରେ କହିବାକୁ ଗଲେ, ନାରୀ ଅଳ୍ପ କେତେ ମୁହୂର୍ତ୍ତ ପାଇଁ ସ୍ତ୍ରୀ ହୋଇଥାଏ; କିନ୍ତୁ ସବୁଦିନ ପାଇଁ ମାଆ—

[ସାମନ୍ତ ତାଳି ମାରିବା ]

ମିସେସ କାର୍ଣୀକର : ଦେଖନ୍ତୁ ସାମନ୍ତ ବାବୁ, ଏଠି ଚାଲିଗଲା; କିନ୍ତୁ ଗୀତରେ ଶୋ ବେଳେ ଏମିତି ତାଳି ମାରିବେ ନାହିଁ ।

ସାମନ୍ତ : ଠିକ୍ ଅଛି । ମୁଁ ଏବେ ନିଜକୁ ସମ୍ଭାଳି ପାରିଲି ନାହିଁ । କି ବଢ଼ିଆ କଥା କହିଲେ ଓକିଲ ସାହେବ ।

ସୁଖାମ୍ରେ : ମୁଁ ଯାହା କହିଲି, ତା ଠିକ୍ । ଏସବୁ ଦୃଷ୍ଟିରୁ କୌଣସି ସ୍ତ୍ରୀ ଯଦି ନିଜ ପେଟରୁ ଜନ୍ମକରି ଛୋଟ-ଛୁଆଟିକୁ ହତ୍ୟାକରେ, ଆମେ ପ୍ରତିଷ୍ଠିତ, ମର୍ଯ୍ୟାଦା ସମ୍ପନ୍ନ ନାଗରିକମାନେ କହିବା କଅଣ ? ଆମେ କହିବା, ପୃଥିବୀରେ ଏହାଠାରୁ ହୀନତର ଓ ଘୃଣ୍ୟତର କାର୍ଯ୍ୟ କିଛି ଆଉ ହୋଇ ନପାରେ । ମୁଁ ସାକ୍ଷୀଙ୍କ ସାକ୍ଷ୍ୟଦ୍ୱାରା ଏଠାରେ ପ୍ରମାଣ କରିବାକୁ ଚାହେଁ ଯେ ଏହି ଆସାମୀ ଏହିପରି ଏକ ଘୃଣ୍ୟ କାର୍ଯ୍ୟ କରିଛନ୍ତି ।

[ରୋକଡ଼େ ସାକ୍ଷୀ ବାକ୍ସ ଆଣିବା]

ବେଣାରେ : (ଦୁଷ୍ଟାମିର ସ୍ୱରରେ ଅସ୍ତେ ଅସ୍ତେ) ଏ ବାଲୁ !

[ବାଲୁ ବିରକ୍ତ ହୋଇଉଠିବା । ଏ ଭିତରେ ପୋଙ୍ଗେ ଅନ୍ୟଘରୁ ପୁଣି ଆସିଥିବା]

ମୁଖାର୍ଜ୍ଜୀ : ମୋର ପ୍ରଥମ ସାକ୍ଷୀ ହେଉଚନ୍ତି ବିଶ୍ୱବିଖ୍ୟାତ ବୈଜ୍ଞାନିକ ମିଷ୍ଟର ଗୋପାଳ ପୋଙ୍ଗେ । ଆଚ୍ଛା ପୋଙ୍ଗେ, ତମେ ଖୁସିତ ? ମୁଁ ତମକୁ ହଠାତ୍ ବିଶ୍ୱବିଖ୍ୟାତ ପଦକୁ ଉନ୍ନୀତ କରିଦେଲି, କେମିତି ?

ମିଷ୍ଟର କାଶୀକର : ତାଙ୍କୁ ଉଇଟ୍‌ନେସ୍ ବକସ୍‌କୁ ଡକାଯାଉ ।

[ ଇଏର୍‌ପିକ୍ ଲଗାଇବା ]

(ଉଇଟ୍‌ନେସ୍ ବକସ୍‌କୁ ଯିବା, ରୋକଡ଼େ ବଡ଼ ବହିଟି ଆଣି ଆଗରେ ଧରି ଠିଆହେବା ।)

ପୋଙ୍ଗେ : (ବହିର ପ୍ରଥମ ପୃଷ୍ଠା ଓଲଟାଇ ଓ ପରେ ବହି ଉପରେ ହାତରଖି ଗମ୍ଭୀରଭାବେ କହିବା)

ମୁଁ ବି. ଏନ୍. ପୋଙ୍ଗେ । ମୋ ହାତ ଅକ୍‌ସଫୋର୍ଡ଼ ଡ଼କ୍‌ସନାରୀ ଉପରେ ରଖି ଏଥିଦ୍ୱାରା ଶପଥ କରୁଛି ଯେ; ମୁଁ ଯାହା କହିବି, ସତ କହିବ । ସତଛଡ଼ା ଆଉ କିଛି କହିବି ନାହିଁ ।

[ବେଣାରେ ଖିଲ ଖିଲ ହସୁଥାନ୍ତି]

ମିସେସ୍ କାଶୀକର୍ : (ରୋକଡେ ଉପରେ ବିରକ୍ତ ହୋଇ) ବାଲୁ, ଏ ଡ଼କ୍‌ସିନାରୀ କଅଣ ଆଣିଛୁ ? ଗୀତା କାହିଁ ?

ରୋକଡ଼େ : (ଅତମତ ହୋଇ) ମାଆ ମୁଁ ଆଣିବାକୁ ଭୁଲିଗଲି । ଭୁଲରେ ଡକ୍‌ସନାରୀଟା ନେଇ ଆସିଲି ।

( ମନେ ମନେ ଗୁଣୁ ଗୁଣୁ ହୋଇ ) କେତେକଥା ମୁଁ ମନେ ରଖନ୍ତି ଯେ ?

ବେଣାରେ : ଆଜ୍ଞା ବେଗ୍ଗୁର୍ ବାଲୁ ।

ରେ କଡେ : ମତେ ଆପଣ ଆଉ ଦରଦ ଦେଖାନ୍ତୁ ନାହିଁ କହି-
ଦେଉଛି ।

ମିଷ୍ଟର କାଶୀକର : (ଟେବୁଲରେ ହାତୁଡ଼ି ବାଡ଼େଇ) ଷ୍ଟାର୍ଟ ଦି ଏକ୍-
ଜାମିନେସନ । ଜେରା ଆରମ୍ଭ କରାଯାଉ ।

ମିସେସ୍ କାଶୀକର : (ସାମନ୍ତଙ୍କୁ ଧୀରେ ଧୀରେ) ଏ ଜେରା ସବାଲ୍ କେମିତି
ହେଉଛି, ଭଲକରି ଲକ୍ଷ୍ୟ ରଖିବେ ।

[ସାମନ୍ତ ମୁଣ୍ଡ ହଲେଇବା]

ସୁଖାତ୍ମେ : (ପୋଙ୍କେ ପାଖକୁ ଯାଇ) ଆପଣଙ୍କ ନାମ ?

ପୋଙ୍କେ : ବି. ଏନ୍. ପୋଙ୍କେ । ଏଥର ଅନ୍ୟସବୁ ମାମୁଲିପ୍ରଶ୍ନ
ରଖିକରି, ଅସଲ ପ୍ରଶ୍ନରେ ଆଗେଇ ଚାଲନ୍ତୁ ।

ସୁଖାତ୍ମେ : ମି: ପୋଙ୍କେ । ଏ ଆସାମୀକୁ ଆପଣ ଜାଣନ୍ତି ?

ବେଣାରେ : (ପୋଙ୍କେ କହିବା ଢଙ୍ଗରେ) ହୁଁ ।

ପୋଙ୍କେ : ବେଶ୍ ଭଲକରି ଜାଣେ ।

[ବେଣାରେ ଆଡକୁ ସାବଧାନତାର ସହ
ଲକ୍ଷ୍ୟ କରି]

ସୁଖାତ୍ମେ : ତାଙ୍କ ସାମାଜିକ ମର୍ଯ୍ୟାଦା ଅର୍ଥାତ୍ ସୋସିଆଲ୍
ଷ୍ଟେଟସ୍ ସମ୍ପର୍କରେ ଆପଣଙ୍କ ମତ କଅଣ ?

ପୋଙ୍କେ : ସେ ଜଣେ ଶିକ୍ଷୟିତ୍ରୀ । ଅନ୍ୟ କଥାରେ ସ୍କୁଲ
ମାଷ୍ଟ୍ରାଣୀ—

ବେଣାରେ : (ଜିଭ ଦେଖେଇ) କିନ୍ତୁ ମୋର ବୟସ ଆହୁରି ଗଡ଼ି-
ଯାଇନାହିଁ ।

ସୁଖାତ୍ମେ : ମିଷ୍ଟର ପୋଙ୍କେ ! ଆସାମୀ ବିବାହିତା, ନାଁ
ଅବିବାହିତା ?

ପୋଙ୍କେ : ଆପଣ ଆସାମୀକୁ କାହିଁକି ପଚାରୁ ନାହାନ୍ତି ?

ସୁଖାମ୍ନେ : କିନ୍ତୁ ଆପଣଙ୍କୁ ପଚରାଗଲେ ଆପଣ କ'ଣ କହିବେ ?

ପୋଙ୍ଗେ : ଲୋକଙ୍କ ଦୃଷ୍ଟିରେ ତ ସେ ଅବିବାହିତା ।

ବେଣାରେ : ତା ଅର୍ଥ ଅନ୍ୟ ଦୃଷ୍ଟିରେ—

ମିଷ୍ଟର କାଣୀକର : ଅର୍ଡର, ଅର୍ଡର, ମିସ୍ ବେଣାରେ, ସଂଯତ ହୁଅନ୍ତୁ । ଆତ୍ମସଂଯମର ମର୍ଯ୍ୟାଦା ଭୁଲନ୍ତୁନାହିଁ । ସୁଖାମ୍ନେ । ହଁ, ଆପଣ କଣ୍ଟିନିଉ କରନ୍ତୁ, ମୁଁ ଟିକିଏ ଆସୁଛି ।

[କିଛି ଅନ୍ୟ ରୁମ୍‌କୁ ଯିବା]

ମିସେସ୍ କାଣୀକର : ବର୍ତ୍ତମାନ ପାଇଁ ଏସବୁ ଠିକ୍ ଅଛି ; କିନ୍ତୁ ଶେଷରେ ଏମିତି ଚାଲିବ ନାହିଁ । ସେତେବେଳେ ସବୁ ଭଲ ଭାବରେ କରିବାକୁ ପଡ଼ିବ ।

ସୁଖାମ୍ନେ : (ମନକୁ ମନ) ଏଇ ମିଷ୍ଟର କାଣୀକରଙ୍କର ଅସଲ ସମୟରେ ହିଁ ଭୁଲ୍ କଥାଗୁଡ଼ାଏ ମନକୁ ଜୁଟି ଯାଇଥାଏ । (ପ୍ରକାଶ୍ୟରେ) ଆଚ୍ଛା ମିଷ୍ଟର ପୋଙ୍ଗେ ଆସାମୀଙ୍କ ନୈତିକ ଚରିତ୍ର ସମ୍ପର୍କରେ ଆପଣଙ୍କ ମତ କଅଣ ? ତାହା ଜଣେ ଅବିବାହିତା ନାରୀଙ୍କର ସ୍ୱାଭାବିକ୍ ଯେମିତି ହେବାକଥା, କଅଣ ସେମିତି ? ଆପଣ ଅନ୍ତତଃ, ଏ ଟ୍ରାୟାଲକୁ ସିରିୟସ୍ଲି ନେବା ଉଚିତ ।

ବେଣାରେ : କିନ୍ତୁ ଜଣେ ଅବିବାହିତା ନାରୀର ସ୍ୱାଭାବିକ ନୈତିକ ଚରିତ୍ର କଅଣ ହେବା କଥା, ସେ କେମିତି ଜାଣିବେ ?

ପୋଙ୍ଗେ : (ବେଣାରେ କଥାକୁ ଭ୍ରୂକ୍ଷେପ ନକରି)ହାଁ, ତାହାଠାରୁ ଭିନ୍ନ ।

ସୁଖାମ୍ନେ : ଉଦାହରଣ ସ୍ୱରୂପ—

ପୋଙ୍ଗେ : ଆସାମୀ ଟିକିଏ ବେଶୀ—

ସୁଖାମ୍ନେ : ଟିକିଏ ବେଶୀ—ଏଥିର ଅର୍ଥ କଅଣ ?

ପୋଙ୍ଗେ : ତା'ର ଅର୍ଥ – ତା'ର ଅର୍ଥ—ସେ ପୁରୁଷଙ୍କ ସହିତ ବେଶୀ ମିଳାମିଶା କରନ୍ତି ।

ବେଣାରେ : (ପରିହାସ ସ୍ୱରରେ) ଆହା ହା-ବିଚରା ପୁରୁଷମାନେ ।

ସୁଖାମ୍ୱେ : ମିସ୍ ବେଣାରେ, ଆପଣ ଅଦାଲତ ଅବମାନନା କରୁଛନ୍ତି ।

ବେଣାରେ : ଅଦାଲତ । ମହାଶୟ ସେପଟ ରୁମ୍‌କୁ ଯାଇଛନ୍ତି । ତା'ହାଲେ ମୁଁ ଅବମାନନା କଲି କାହାକୁ ମିଷ୍ଟର ସୁଖାମ୍ୱେ ? ଆପଣଙ୍କ କଥାର କିଛି ମୂଲ୍ୟ ନାହିଁ ।

[ସାମନ୍ତ ହୋହୋ ହସି ଉଠିବା]

ସୁଖାମ୍ୱେ : (ବେଣାରେଙ୍କୁ) ଆପଣଙ୍କ ସହିତ ଅଯଥା ବକ୍‌ବକ୍ କରି ଲାଭନାହିଁ । ହଁ, ମିଷ୍ଟର ପୋଙ୍ଗେ !

[ପୋଙ୍ଗେ ଏ ଭିତରେ ଉଇଟ୍‌ନେସ୍ ଡକ୍‌ରୁ ବାହାରିଯାଇ କାର୍ତ୍ତିକଙ୍କସହ କଥାବାର୍ତ୍ତା ଚଳାଇଥିବା)

କେହିବ ସିଗ୍ରୁପ୍ସ ଲୁହନ୍ତି ।

[ପୋଙ୍ଗେ ପୁଣି ବକ୍‌ସକୁ ଫେରିବା]

ମିଷ୍ଟର ପୋଙ୍ଗେ, ଆପଣ ମୋତେ କହି ପାରିବେ ? ବିବାହିତ ବା ଅବିବାହିତ କୌଣସି ବ୍ୟକ୍ତିଙ୍କ ସହ ଏ ମହିଳାଙ୍କର କିଛି ବିଶେଷ ସମ୍ପର୍କ ଥିବା କଥା ଆପଣ ଜାଣନ୍ତି ?

ବେଣାରେ : (ମଝିରୁ କହିବା) ହଁ ଅଛି । ଖୋଦ ସରକାରୀ ଓକିଲଙ୍କ ସହ । ବିଚାରପତିଙ୍କ ସହ ମଧ୍ୟ । ତା ଛଡ଼ା, ପୋଙ୍ଗେ, ବାଲୁ, କାର୍ତ୍ତିକ—

ରୋକଡ଼େ : ମିସ୍ ବେଣାରେ, ମୁଁ ସତର୍କ କରି ଦେଉଛି ବେଶୀ ବକ୍‌ବକ୍ ହେଲେ ଭଲ ହେବ ନାହିଁ ।

ପୋଙ୍ଗେ : ମିଷ୍ଟର ସୁଖାମ୍ୱେ, ବର୍ତ୍ତମାନ ପରିସ୍ଥିତିରେ ଟ୍ରାୟାଲର ଏ ଫାର୍ସ ଚଳାଇ ଫଳ କଅଣ ? କେହି ତ ସିଗ୍ରୁପ୍ସ

ନୁହନ୍ତି । କାଶୀକର ଭିତରକୁ ଯାଇଛନ୍ତି । ବେଣାରେ ଏମିତିସବୁ ଢଙ୍ଗ ଢାଙ୍ଗ ଦେଖାଉଛନ୍ତି, କହିବା ପାଇଁ ମତେ କେହି ସୁଯୋଗ ଦେଉନାହାନ୍ତି ।

କାର୍ତ୍ତିକ : ଆମର ନାଟକମାନଙ୍କ ଗୋଳମାଲ ବରଂ ଏହାଠୁ ବେଶୀ ସିରିୟସ୍ ହେଉଥିଲା ।

ମିସେସ୍ କାଶୀକର : ବେଣାଟିଏ, ବେଶୀ ଗୋଳମାଳ କରନାହିଁ । ତମ ଯୋଗୁଁ ଘରେ ଶୋ ଯଦି କିଛି ବିଗିଡ଼ି ଯାଏ ନାଁ, ତାହାହେଲେ ଭଲ ହେବ ନାହିଁ କହୁଛି ।

ବେଣାରେ : ମୁଁ ତ ଟ୍ରାୟାଲରେ ସାହାଯ୍ୟ କରୁଛି ।

ମିଷ୍ଟର କାଶୀକର : (ଫେରି) କଅଣ ହୋଇଛି ? ହଁ, ମିଷ୍ଟର ସୁଖାତ୍ମେ କଣ୍ଟିନ୍ୟୁ କରନ୍ତୁ । ମୋର ଇୟର ପିକ୍ କାହିଁ ?

ବେଣାରେ : ଗାଁକୁ ଯାଇ ଟିକିଏ ବୁଲି ଆସିବାକୁ ମୋର ଇଚ୍ଛା ହେଉଛି । ଆପଣମାନେ ଟ୍ରାୟାଲ ଚଳାଉଥାନ୍ତୁ । ଶୁଦ୍ଧହତ୍ୟା—ହୁଁଃ । ମୁଁ ଯାଇଁ ବୁଲି ଆସିଲେ; ଅନ୍ତତଃ କିଛି ଖୋଲା ହାଓ୍ୱା ପାଇବି ।

କାର୍ତ୍ତିକ : ତା'ହେଲେ ବନ୍ଦ କରାଯାଉ ।

ମିସେସ୍ କାଶୀକର : ନାଁ, ଅନ୍ତତଃ ଟ୍ରାୟାଲଟା ଶେଷ କରାଯାଉ । ଯାହା ଆରମ୍ଭ କରାଗଲା, ତାହା ଅଧାରୁ ଛାଡ଼ି ଦିଆଯିବା ଉଚିତ ନୁହେଁ ।

ସାମନ୍ତ : (ନମ୍ରଭାବରେ ମିସେସ୍ କାଶୀକରଙ୍କୁ) ତା ଅର୍ଥ, ସବୁ ଏଇଠି ଖତମ ?

ମିଷ୍ଟର କାଶୀକର . (ଇୟରପିକ୍ ଖୋଜିନେଇ) ହଁ, ମିଳିଗଲା । କମ୍ ଅନ୍ ନାଁଓ, ହ୍ୱଅଟ୍ ଇଜ୍ ଟୁ କଣ୍ଟିନ୍ୟୁ— (ବେଣାରେଙ୍କୁ ସଂଯତ ହେବାପାଇଁ ଇଙ୍ଗିତଦେଇ) ସୁଖାତ୍ମେ, ଆପଣ ଆଉ ଅପେକ୍ଷା କରିଛନ୍ତି କାହିଁକି ?

ସୁଖାତ୍ମେ : ଆପଣଙ୍କ ଇୟରପିକ୍ ମିଳି ନଥିଲା ବୋଲି ଅପେକ୍ଷା କରିଥିଲି ।

(ଚା'ପରେ ହଠାତ୍ ଗମ୍ଭୀର ହୋଇ) ମିଷ୍ଟର ପୋଙ୍ଗେ !

(ପୋଙ୍ଗେ ପୁଣି ଉଇଟ୍‌ନେସ୍ ବକ୍‌ସକୁ ତରବର ହୋଇ ଫେରିଯିବା) ଆସାମୀଙ୍କ ଆଚରଣ ସମ୍ପର୍କରେ ଆପଣ କେବେ କିଛି ବିଶେଷ କଥା ଲକ୍ଷ୍ୟ କରିଛନ୍ତି ?

ପୋଙ୍ଗେ : ହଁ, ବହୁତ ।

ସୁଖାମ୍ନେ : କଅଣ ? (ବଡ଼ ଟାଣିବା)

ପୋଙ୍ଗେ : ବେଳେ ବେଳେ ତାଙ୍କ ଆଚରଣ ପାଗଳ ଲୋକଙ୍କ ଆଚରଣପରି ମନେହେବ, ଅର୍ଥାତ୍ ତାଙ୍କ କଥାବାର୍ତ୍ତା, ଚାଲିଚଳନ ନିତାନ୍ତ ଅବୋଧ୍ୟ ହୋଇଉଠେ ।

ସୁଖାମ୍ନେ : ଦୃଷ୍ଟାନ୍ତ ସ୍ୱରୂପ ?

ପୋଙ୍ଗେ : ଦୃଷ୍ଟାନ୍ତ ସ୍ୱରୂପ, ସେ ଥରେ ମୋ ପାଇଁ ଏକ ବାହାଘର ଯୋଗାଡ଼ କରିଥିଲେ । ଦୃଷ୍ଟାନ୍ତ ପାଇଁ ବେଶୀ ଦୂରକୁ ଯିବା କଅଣ ଦରକାର ? ଏଇ ଦେଖନ୍ତୁ ନା, ବର୍ତ୍ତମାନ ସେ କେମିତି ପାଗଳଙ୍କ ପରି ଜିଭ ଦେଖାଉଛନ୍ତି ।

[ ବେଣାରେ ହଠାତ୍ ଜିଭ ଭିତରକୁ ନେଇଯିବା]

ସୁଖାମ୍ନେ : (ସତେ ଯେମିତି ଗୋଟାଏ ବଡ କ୍ଲୁ ପାଇଗଲେ, ସେଇ ଭାବରେ)ଗୁଡ଼୍, ଆପଣ ଏଥର ଯାଇ ବସି-ପାରନ୍ତି, ମିଷ୍ଟର ପୋଙ୍ଗେ, ଦ ଗ୍ରେଟ ସାଇଣ୍ଟିଷ୍ଟ । ଆମର ପରବର୍ତ୍ତୀ ସାକ୍ଷୀ ହେଉଛନ୍ତି, ମିଷ୍ଟର କାର୍ତ୍ତିକ— ଦ ଗ୍ରେଟ୍ ଆକ୍ଟର ।

[ପୋଙ୍ଗେ ଉଇଟ୍‌ନେସ୍ ବକ୍‌ସରୁ ବାହାରକୁ ଆସି, ବେଣାରେଙ୍କୁ କିଛି ସମୟ ସ୍ଥିର ଦୃଷ୍ଟିରେ ଚାହିଁ, ଘରର ଗୋଟିଏ ପଟ କାନ୍ଥରେ ଆଉଜି

ଠିଆହେବା । କାର୍ତ୍ତିକ ନାଟକୀୟ ଢ଼ଙ୍ଗରେ ଉଇଟ୍‌ନେସ ବକ୍ସକୁ ଆସି ଗୋଟିଏ ପୋଜ୍ ନେଇ ଠିଆହେବା ]

କାର୍ତ୍ତିକ : ପଚ୍ଚରନ୍ତୁ ।

ସୁଖାମୟେ : ଶପଥ, ନାମ,—ବୃତ୍ତି — ସବୁ ହୋଇଗଲା ? ଆଚ୍ଛା ହଉ, ମିଷ୍ଟର କାର୍ତ୍ତିକ, ଆପଣ ଜଣେ ଆକ୍ଟର ?

କାର୍ତ୍ତିକ : Yes. ମୁଁ ସେଥିପାଇଁ ଗର୍ବିତ ମଧ୍ୟ ।

ସୁଖାମୟେ : ଠିକ୍ ଅଛୁ, ଠିକ୍ ଅଛୁ ଆଚ୍ଛା, ଆପଣ ଏ ମହିଳାଙ୍କୁ ଜାଣନ୍ତି ?

କାର୍ତ୍ତିକ : (ନାଟକୀୟ ଢଙ୍ଗରେ ବେଣାରେଙ୍କୁ ଦେଖି) I think I know this lady.

ସୁଖାମୟେ : ଥିଙ୍କ୍‌ର ମତଲବ କଣ ମିଷ୍ଟର କାର୍ତ୍ତିକ ?

କାର୍ତ୍ତିକ : ଥିଙ୍କ୍‌ର ଅର୍ଥ ଚିନ୍ତା ବା ଅନୁଭବ କରିବା । ଆପଣ ଚାହିଁଲେ ଏଠି ଡ଼ିକ୍‌ସନାରୀ ଦେଖି ପାରନ୍ତି ।

ସୁଖାମୟେ : (ଡ଼ିକ୍‌ସନାରୀକୁ ହାତ ବଢାଇବା, କିନ୍ତୁ ହଠାତ୍ ନିଜକୁ ଆୟତ୍ତ କରି ନେଇ ) ନା, ମୋର ତା' ଦରକାର ନାହିଁ ମିଷ୍ଟର କାର୍ତ୍ତିକ । ଆପଣ ଦୟାକରି ନିର୍ଦ୍ଦିଷ୍ଟ ଭାବେ କୁହନ୍ତୁ, ଏ ମହିଳାଙ୍କୁ ଜାଣନ୍ତି ନା ନାହିଁ ?

କାର୍ତ୍ତିକ : (କାନ୍ଧ ସଞ୍ଚାଳନ କରି) ଷ୍ଟ୍ରେଞ୍ଜ । କେବେକେବେ, ଆମେ ଅନୁଭବ କରୁ ଯେ କୌଣସି ବ୍ୟକ୍ତିଙ୍କୁ ହୁଏତ ଆମେ ଜାଣିଚୁ, କିନ୍ତୁ ଅସଲରେ ଆମେ ତାଙ୍କୁ ଜାଣି ନାହୁଁ । ଟ୍ରୁଥ୍ ଇଜ୍ ଷ୍ଟ୍ରେଞ୍ଜର ଦ୍ୟାନ୍ ଫିକ୍‌ସନ ।

ସୁଖାମୟେ : ଆପଣ ଦୁହେଁ ପରସ୍ପରକୁ ଜାଣିଲେ କିପରି ?

କାର୍ତ୍ତିକ : ଆମର ଗ୍ରୁପ୍ ଜଣେଆରେ । ଆମେ ଅଦାଲତ ସମ୍ପର୍କରେ ଅଭିନୟ ମାନ କରିଥାଉ । ଆମ ଗ୍ରୁପ୍‌ରେ ସେ ଜଣେ ସଭ୍ୟା । ପ୍ଲେସ୍ ଆଇ ରିମେମ୍ବର ଇଟ୍ କ୍ଲିୟରଲି ।

ସୁଖାମ୍ନେ : ସେସବୁ ଅଭିନୟ କେମିତି ହୁଏ ମିଷ୍ଟର କାର୍ତ୍ତିକ ?

କାର୍ତ୍ତିକ : ଚମତ୍କାର ।

ସୁଖାମ୍ନେ । (ଓକିଲ ଢଙ୍ଗରେ ମିଷ୍ଟର କାଶୀକରଙ୍କୁ) ମି. ଲର୍ଡ଼ ! ମୁଁ ନିବେଦନ କରୁଛି କି ଏହା ଏକ ଗୁରୁତ୍ୱପୂର୍ଣ୍ଣ ଷ୍ଟେଟ୍‌ମେଣ୍ଟ ଭାବେ ରେକର୍ଡ଼ କରାଯାଉ ।

ମିଷ୍ଟର କାଶୀକର : (ଇୟରପିକ୍ ଲଗାଇ) ହଁ, ତା କରାଯିବ । ମକଦ୍ଦମା ଚଳାନ୍ତୁ ।

ସୁଖାମ୍ନେ : ମିଷ୍ଟର କାର୍ତ୍ତିକ ! ମତେ ଠିକ୍ କୁହନ୍ତୁ ଆପଣମାନେ ଯେଉଁସବୁ ନାଟକ ଅଭିନୟ କରନ୍ତି ସେଥିରେ ମାଆର ବର୍ଣ୍ଣନା କିପରି କରାଯାଇଥାଏ ।

କାର୍ତ୍ତିକ : ଆଧୁନିକ ନାଟକ ମାନଙ୍କରେ ତ ଏସବୁ କଥା ନଥାଏ । ଆଧୁନିକ ନାଟକରେ କେବଳ ଜୀବନର ବ୍ୟର୍ଥତାର ଚିତ୍ର ରହିଥାଏ । ଅବଜେର୍ଭେସନ୍ ଅଫ୍ ଲାଇଫ୍ । ମାନେ, ଏ ସାରା ମନୁଷ୍ୟ ଜୀବନ ତ –

ମିଷ୍ଟର କାଶୀକର : ଏଇ···ଏଇ ବିଷୟରେ ମୁଁ ଏକମତ ହୋଇପାରେ ନାହିଁ···। ମଣିଷ ଜୀବନରେ କିଛି ଅର୍ଥ ରହିବା ଦରକାର । ଅନନ୍ତ ଆମର ଉଦ୍ୟମଶକ୍ତି । ଏହା ହିଁ ସମସ୍ତଙ୍କର ମନ୍ତ୍ର ହେବା ଉଚିତ । ହଁ, ଜୀବନରେ କିଛି ଉଦ୍ଦେଶ୍ୟ, କିଛି ଲକ୍ଷ୍ୟ ରହିବା ନିତାନ୍ତ ଲୋଡ଼ା ।

ସୁଖାମ୍ନେ : ଏକଥା ବର୍ତ୍ତମାନ ବାଦ ଦିଆଯାଉ । ଆଚ୍ଛା ମି. କାର୍ତ୍ତିକ, ମାତାର ସଂଜ୍ଞା କଅଣ ବୋଲି ଆପଣଙ୍କୁ ପଚାରିଗଲେ, ଆପଣ କ'ଣ କହିବେ ?

କାର୍ତ୍ତିକ : (ଚିନ୍ତାକରି) ଯେ ଜନ୍ମ କରେ ସେ ମାଆ ।

ସୁଖାମ୍ନେ : ମି କାର୍ତ୍ତିକ ! ମାଆ କିଏ ? ଯେଉଁ ନାରୀ ନିଜ ଜନ୍ମକଲ ଛୁଆକୁ ଯତ୍ନର ସହିତ ରକ୍ଷାକରେ ସେ, ନା ଯେ ନିଷ୍ଠୁରଭାବେ ତାକୁ ହତ୍ୟାକରେ ସେ ? କେଉଁ ସଂଜ୍ଞା ଆପଣଙ୍କର ବେଶୀ ପସନ୍ଦ ?

କାର୍ତ୍ତିକ : ଉଭୟେ ମାଆ । କାରଣ ଉଭୟେ ଜନ୍ମ ଦେଇଛନ୍ତି ।

ସୁଖାମ୍ନେ : ମାତୃତ୍ୱ ବୋଇଲେ ଆପଣ କଅଣ ବୁଝନ୍ତି ?

କାର୍ତ୍ତିକ : ଛୁଆ ଜନ୍ମ କରିବା ହେଉଛି ମାତୃତ୍ୱ ।

ସୁଖାମ୍ନେ : କିନ୍ତୁ ମାଈ କୁକୁର ମଧ୍ୟ ତ ଛୁଆ ଜନ୍ମକରେ ?

କାର୍ତ୍ତିକ : ସେ ବି ନିଶ୍ଚୟ ମାଆ । କିଏ ମନା କରୁଛି ? କିଏ କେଉଁଠି କହୁଛି ଯେ, କେବଳ ମଣିଷହିଁ ମାଆ ହୋଇପାରେ, କୁକୁର ନୁହେଁ ?

ବେଣାରେ : (ଅଳସଭଙ୍ଗୀରେ) ବାଃ ବାଃ କାର୍ତ୍ତିକ ।

[କାର୍ତ୍ତିକ ତାକୁ ଭ୍ରୂକ୍ଷେପ ନକରି]

ସୁଖାମ୍ନେ : କାର୍ତ୍ତିକ ଆଜି ବେଶ ଫର୍ମରେ ଅଛନ୍ତି ।

ମିଷ୍ଟର କାଶୀକର : କାର୍ତ୍ତିକ, ଆପଣଙ୍କର କିଛି ବାହାଦୁରୀ ଦେଖାଇବାର ଅଛି ତ, ଟିଭି ଶୋ'ରେ ଦେଖାଇବେ । ଏବେ ପ୍ରଶ୍ନମାନଙ୍କର ସିଧା ଜବାବ ଦିଅନ୍ତୁ ।

ସୁଖାମ୍ନେ : ମିଷ୍ଟର କାର୍ତ୍ତିକ ! ମୋର ପରବର୍ତ୍ତୀ ପ୍ରଶ୍ନର ଉତ୍ତର ଦେବା ପୂର୍ବରୁ ଭଲକରି ଚିନ୍ତା କରିବେ । ଆସାମୀଙ୍କ ନୈତିକ ଚରିତ୍ର ସମ୍ପର୍କରେ ଆପଣଙ୍କ ମତ କଅଣ ?

କାର୍ତ୍ତିକ : (ଚିନ୍ତାକରିବାର ଦୁଇତିନୋଟି ପୋଜ୍ ନେଇ) ମାନେ, ଆପଣ ପଚାରୁଛନ୍ତି ଏ ମକ୍ ଟ୍ରାୟାଲ୍ ପାଇଁ ନା, ତାଙ୍କ ପ୍ରକୃତ ଚରିତ୍ର ସମ୍ପର୍କରେ ?

ସୁଖାମ୍ନେ : ପ୍ରକୃତ ଚରିତ୍ର ।

ମିଷ୍ଟର କାଶୀକର : ଦେଖନ୍ତୁ ସୁଖାଟମ୍ନେ, ଏସବୁ ପ୍ରଶ୍ନ କେବଳ, ଏ ମକ୍ ଟ୍ରାୟାଲ ସହିତ ସଂପୃକ୍ତ ରହିବା ଭଲହେବ ।

କାର୍ତ୍ତିକ : ଏଇ କଥା ? ତା'ହେଲେ କିଛି ଯାଏ ଆସେ ନାହିଁ, ଆସାମୀଙ୍କ ନୈତିକ ଚରିତ୍ର ସମ୍ପର୍କରେ ମୁଁ କିଛି ଜାଣେ ନାହିଁ ।

ସୁଖାଟମ୍ନେ : କିଛି ଜାଣନ୍ତି ନାହିଁ ? ଆପଣ ନିଶ୍ଚିତ ?

କାର୍ତ୍ତିକ : କିଛି ଜାଣେ ନାହିଁ । ଏ ଟ୍ରାୟାଲ ଯେତେଦୂର ସଂପୃକ୍ତ ମୁଁ କିଛି ଜାଣେ ନାହିଁ ।

[ବେଣାରେ ଆଶଙ୍କିତ ହୋଇ ଉଠିବା]

ସୁଖାଟମ୍ନେ : ମିଷ୍ଟର କାର୍ତ୍ତିକ ! (ହଠାତ୍ ଉତ୍ସାହରେ) ଆପଣ କେବେ ଏ ଆସାମୀଙ୍କୁ କୌଣସି ସନ୍ଦେହଜନକ ସ୍ଥିତିରେ ଦେଖିଛନ୍ତି ? ହଁ, କି ନା—ଗୋଟିଏ ଜବାବ ଦିଅନ୍ତୁ ।

କାର୍ତ୍ତିକ : ମୁଁ ଦେଖିନାହିଁ । କିନ୍ତୁ ରୋକଡେ ଦେଖିଛି ।

ରୋକଡେ : (ବ୍ୟସ୍ତହୋଇ) ମୁ ? ମୁଁ ତ କିଛି ଜାଣେନ ।

ସୁଖାଟମ୍ନେ : (ବଡ଼ ଓକିଲଙ୍କ ପରି ଗ୍ରୀବା ଫୁଲାଇ) ମି. କାର୍ତ୍ତିକ ! Thank you very much. ଆପଣ ବର୍ତ୍ତମାନ ଯାଇ ବସି ପାରନ୍ତି ।

[କାର୍ତ୍ତିକ ଉଇଟ୍‌ନେସ୍ ବକ୍‌ସ ଛାଡ଼ିବା]

ଏଥର ମି. ରୋକଡେ, ଦୟାକରି ଉଇଟ୍‌ନେସ୍ ବକ୍‌ସକୁ ଆସନ୍ତୁ । Please ଆସନ୍ତୁ ।

ମିସେସ୍ କାଶୀକର : (ସାମନ୍ତଙ୍କୁ) ଆପଣ ସବୁ ବୁଝି ପାରୁଛନ୍ତି ତ ?

ସାମନ୍ତ : ହଁ ।

ରୋକଡେ : (ନିଜ ଜାଗାରୁ ନ ଉଠି) ନା, ନା ମୁଁ ଯିବନାହିଁ ।

ସୁଖାମ୍ରେ : ମିଃ ଲର୍ଡ ! ଜମାଦାର ରେକଡ଼େଙ୍କ ସାକ୍ଷ୍ୟ ନିତାନ୍ତ ଜରୁରୀ । ଅବିଳମ୍ବେ ତାଙ୍କୁ ସାକ୍ଷୀ ବକ୍ସକୁ ଡ଼କାଯାଉ ।

ରେକଡ଼େ : (ବ୍ୟସ୍ତ ଭାବେ) ନା, ମୁଁ ଯିବିନାହିଁ । ମତେ ବାଧ କଲେ, ମୁଁ ଏଠୁ ଚାଲିଯିବି ।

ବେଣାଲେ : (ନୀରବରେ ହସୁଥାନ୍ତି)

ମିଷ୍ଟର କାଶୀକର : ରେକଡ଼େ !

(ରେକର୍ଡ଼େ ବାଧ ଭାବେ ସାକ୍ଷୀ ବକ୍ସକୁ ଆସିଲେ, ତାଙ୍କ ଦେହ ଥରୁଥାଏ । ସେ ନିତାନ୍ତ ବିବ୍ରତ)

ପୋଙ୍ଗେ : (କାର୍ତ୍ତିକକୁ) ସେ କଅଣ ଦେଖିଛି କି ?

କାର୍ତ୍ତିକ : ସେ ଦେଖିଛି ବୋଲି କିଏ କହୁଛି ? ମୁଁ ଖାଲି ମଜା କରୁଥିଲି ନାଁ, ତମେ ମୋ ଉପରକୁ କଥା ଠେଲିଦେଲ, ମୁଁ ତା ଉପରକୁ ଠେଲି ଦେଲି । ଖେଳ ତ ଚାଲୁ ରହିବା ଦରକାର । ମାନେ ଏଇ ମିଷ୍ଟର ସୁଖାମ୍ରେଙ୍କ ଖେଳ—

ସୁଖାମ୍ରେ : ଶପଥ—ନାମ, ବୃତ୍ତି, ଏସବୁ ଛାଡ଼ନ୍ତୁ । ଆଚ୍ଛା ମିଷ୍ଟର ରେକଡ଼େ ! ମିଷ୍ଟର କାର୍ତ୍ତିକ ତାଙ୍କ ସାକ୍ଷ୍ୟ ଦେବା ବେଳେ ଆପଣଙ୍କ କଥା ଉଲ୍ଲେଖ କରିଛନ୍ତି । ଏହା ଆପଣ ଜାଣନ୍ତି । ସେ ବିଷୟରେ ଆଉ ଅଧିକ କିଛି ଆପଣ ଆମକୁ କହି ପାରିବେ ?

ମିସେସ୍ କାଶୀକର : ବାଲୁ, ଥାତ'ମାତା ନ ହୋଇ ବେଶ୍ ଚମତ୍କାର ଏକ ସାକ୍ଷ୍ୟ ଦେଇଗଲା । ତୁ ଯେବେ, ଏବେ ଭଲ କରିବୁ ନା, ଆଗର ପ୍ରୋଗ୍ରାମମାନଙ୍କରେ ତତେ ଆହୁରି ଭଲ ଭଲ ରୋଲ ଦିଆଯିବ । ସାମନ୍ତ, ଏସବୁ ଭଲ କରି ଲକ୍ଷ୍ୟ କରୁ ଥାଆନ୍ତୁ ।

(ମି. କାଶୀକର ମିସେସ୍ କାଶୀକରଙ୍କ ପ୍ରତି ବିରକ୍ତିରେ ଚାହିଁବା । ମିସେସ୍ କାଶୀକର ନୀରବ ହୋଇଯିବା)

ସୁଖାତ୍ମେ : ବେଶ୍ ମି. ରୋକଡ଼େ ! କହନ୍ତୁ ଆପଣ କଅଣ ଦେଖିଲେ ? (ରୋକଡେ଼ ଅତ୍ୟନ୍ତ ବିବ୍ରତ ହୋଇ ଥରକୁ ଥର ଢୋକ ଗିଳିବା) ମିଷ୍ଟର ରୋକଡ଼େ, ଈଶ୍ୱରଙ୍କୁ ସାକ୍ଷୀ ରଖି ଆପଣ କୁହନ୍ତୁ କଅଣ ଦେଖିଲେ ? (ରୋକଡ଼େ ନୀରବ)

ସୁଖାତ୍ମେ : (ସିନେମାର ଉକିଲ ପରି) ମିଷ୍ଟର ରୋକଡ଼େ, ଏକ ନିର୍ଦ୍ଦିଷ୍ଟ ପରିସ୍ଥିତିରେ ଏକ ନିର୍ଦ୍ଦିଷ୍ଟ ସମୟରେ ଆପଣ ଦେଖିଲେ । କୁହନ୍ତୁ, ଆନସର୍, please ।

ରୋକଡ଼େ : (ଅତି କଷ୍ଟରେ) ମୁଁ—ମୁଁ ଦେଖିଲି—ମାନେ—

[ତାଙ୍କ ଦେହରୁ ଝାଳ ଗମଗମ ବୋହୁଥିବା – ବେଣାରେ ଅବିଶ୍ରାନ୍ତ ହସି ଚାଲିଥିବା । କାର୍ଣ୍ଣିକ ପୋଙ୍ଗେଙ୍କୁ ଆଖିରେ କିଛି ଇଙ୍ଗିତ କରିବା ]

ମିଷ୍ଟର କାଶୀକର : ମୂଳରୁ ହିଁ ଏଇଟା ଏମିତି ଗୋଟାଏ ଗଧ ।

ମିସେସ୍ କାଶୀକର : ବାଲୁ, ତତେ ଆଉ ସୁଯୋଗ ମିଳିବ ନାହିଁ । ଶୀଘ୍ର ଜବାବ ଦେ । ତୁ ଏତେ ଡରୁଛୁ କାହିଁକି ? ଚାରି ଲୋକଙ୍କ ଆଗରେ କଥା କହିବାକୁ ମଣିଷର ତ କିଛି ସାହାସ ରହିବା ଦରକାର । କଅଣ କହୁଛନ୍ତି ସାମନ୍ତ ?

ସାମନ୍ତ : କିନ୍ତୁ, ତା ସହଜ ନୁହେଁ ।

ମିଷ୍ଟର କାଶୀକର : ବାଲୁ, ଶୀଘ୍ର ଉତ୍ତର ଦେ ।

ବେଣାରେ : ହଁ, ବାଲୁ କହିଯା, କହିଯା, A-B.C.……

ରୋକଡ଼େ : (ବେଣାରଙ୍କ କଥାରେ ରାଗିଉଠି) ହଉ, ସେତିକି ଥାଉ । (ଝାଳ ପୋଛିବା)

ସୁଖାତ୍ମେ : (ସ୍ୱର ବଦଳାଇ) ମିଷ୍ଟର ରୋକଡ଼େ !

ରେକଡେ : ହାଁ, ଟିକଏ ରୁହନ୍ତୁ ।

(ସେ ସାହାସ ସଞ୍ଚୟ କର ବେଣାରଙ୍କୁ ଥରେ ଦୁଇଥର ଚାହିଁବା—ବେଣାରେ ତଥାପି ହସୁଥାଏ) ହଁ, ମୁଁ କହିବ । ମୁଁ କେତେଦନ ତଳେ ସେ ଭଦ୍ର ବ୍ୟକ୍ତିଙ୍କ ଘରକୁ ଯାଇଥିଲ ।

ସ୍ୱଖାମ୍ନେ : (ଓକିଲ ଢ଼ଙ୍ଗରେ) କାହା ଘର ମିଷ୍ଟର ରେକଡେ, କାହା ଘରକୁ ଯାଇଥିଲେ ?

ରେକଡେ : ମତେ ମଝିରେ ବାଧା ଦଅନ୍ତୁ ନାହିଁ । ମୁଁ—ମୁଁ ଯାଇଥିଲ—ଡାମଲେଙ୍କ ଘରକୁ ।

(ବେଣାରେ ଗମ୍ଭୀର ହୋଇ ଉଠିବା)

ପୋଙ୍ଗେ : ଆମର ପ୍ରଫେସର ଡାମଲେ ?

କାର୍ତ୍ତିକ : ମାନେ, କଲେଜ ହଷ୍ଟେଲରେ ତାଙ୍କ ରୁମ୍‌କୁ ଯାଇଥିଲେ ?

ରେକଡେ : ହଁ, ମୁଁ ସଞ୍ଜବେଳେ ସେଠିକି ଯାଇଥିଲ । ରାତି ହୋଇ ଆସୁଥାଏ । ଆଉ ସେଠି, ସେଠି ସେ ଥିଲେ—ମିସ୍ ବେଣାରେ ।

ସମସ୍ତେ : କଏ ?

ରେକଡେ : (ବେଣାରେ ଆଡକୁ ଚାହିଁ) ଏଥର ହସ । ମତେ କେତେ ହାସ୍ୟ କରିବ କର । ଏ ମହିଳା ସେଠି ଥିଲେ । ଡାମଲେ ଆଉ ଇଏ ମିସ୍ ବେଣାରେ । (ବେଣାରେ ଗମ୍ଭୀର, କାର୍ତ୍ତିକ ପୋଙ୍ଗେଙ୍କୁ ଇଙ୍ଗିତ ଦେବା)

ସାମନ୍ତ : (ମିସେସ୍ କାଶୀକରଙ୍କୁ) ଏ ସବୁ ସତ କଥା ନାଁ କେବଳ ଟ୍ରାୟାଲ୍ ?

ସୁଖାମ୍ନେ : ମିଷ୍ଟର ରେକଡେ, ଆପଣ ପ୍ରଫେସର ଡାମଲେଙ୍କ ଘରକୁ ଯାଇଥିଲେ—ରାତି ହୋଇ ଆସୁଥିବା ବେଳେ କଅଣ ଦେଖିଲେ ? (ଦୃଢ଼ ସ୍ୱରରେ) କଅଣ ଦେଖିଲେ?

ମିଷ୍ଟର କାଣୀକର : ସୁଖାତ୍ମେ, ମୋର ମନେ ହେଉଛି, କଥା ଟିକଏ ଅତି ବ୍ୟକ୍ତିଗତ ସ୍ତରକୁ ଗ୍ଲଲି ଯାଉଛି ।

ସୁଖାତ୍ମେ : ନା, ନା ଆଦୌ ନୁହେଁ, ମି. ଲର୍ଡ ! ଏ ସବୁ କେବଳ ଟ୍ରାୟଲ ପାଇଁ । ତା'ହେଲେ ମିଷ୍ଟର ରୋକଡେ !—

ବେଣାରେ : ନା, ମୁଁ ପ୍ରତିବାଦ କରୁଛି । ଟ୍ରାୟଲ ସହିତ ଏ ସବୁର ସମ୍ପର୍କ କଅଣ ?

ମିସେସ କାଣୀକର : କାହିଁ ତମେ ଏମିତି ବ୍ୟସ୍ତ ହେଉଛ କାହିଁକି ବେଣାରେ ? କେଶ ଚଲାନ୍ତୁ ।

ବେଣାରେ : ମୋର ପ୍ରାଇଭେଟ ଲାଇଫ୍‌କୁ ଏ ଭିତରକୁ ଟାଣି ଅଣାଯିବାର କୌଣସି ଅର୍ଥ ନାହିଁ । ମୁଁ ଯେ କୌଣସି ଲୋକ ଘରକୁ ଯାଇପାରେ । ଡାମଲେ ମତେ ତ ଖାଇଦେଉ ନଥିଲେ ।

ସୁଖାତ୍ମେ : ଆପଣ ସେଠି କଅଣ ଦେଖିଲେ ରୋକଡେ ? କୁହନ୍ତୁ । ମିସ୍ ବେଣାରେ ! ମୋ କଥା ଶୁଣନ୍ତୁ । ଟ୍ରାୟଲର ମୁଡ୍ ନଷ୍ଟ କରନ୍ତୁ ନାହିଁ । ବେଶ୍ ମଜା ହେଉଛି ଏ ଖେଳ । ଟିକଏ ଧୈର୍ଯ୍ୟ ଧରନ୍ତୁ । ହଁ, ରୋକଡେ, ଲଜ୍ଜା କରନ୍ତୁ ନାହିଁ । କୁହନ୍ତୁ କଅଣ ଦେଖିଲେ ? ସବୁ କୁହନ୍ତୁ ।

ରୋକଡେ : (ଆଗକୁ ଅନାଇ କିଛି ସମୟ ରହି) ସେମାନେ ସେଠି ବସିଥିଲେ ।

ସୁଖାତ୍ମେ : ଆଉ ?

ରୋକଡେ : ଆଉ କଅଣ ? ସେ ଦୁହେଁ ସେଠି, ସେ ରୁମ୍‌ରେ ବସିଥିଲେ ।

ସୁଖାତ୍ମେ : ଆଉ କଅଣ ଆପଣ ଦେଖିଲେ ?

ରୋକଡେ : ବାସ୍ ସେତିକି । ( ସୁଖାତ୍ମେ ହତାଶ ହେବା ) କିନ୍ତୁ ସେ ଦୃଶ୍ୟ ମୋ ମନରେ ଏକ ବଡ଼ ଧକ୍‌କା ଦେଲା ।

ମିସ୍ ବେଣାରେ ଅନ୍ଧାର ହୋଇ ଆସିଲା ବେଳେ ଡ଼ାମଲେଙ୍କ ରୁମ୍‌ରେ ?

ବେଣାରେ : ଆହା—ହା—ବରେଂ, ଅଦ୍ଭୁତ କେତେ ପିଲାଟିଏ ରହିଛ !

ଗୋକଲେ : କିନ୍ତୁ ସେତେବେଳେ ମତେ ଦେଖି ତମ ମୁହଁ କାହିଁକି କଳା ପଡ଼ିଗଲା—କୁହ, ମତେ ଡ଼ାମଲେ କାହିଁକି ବାହାରୁ ବାହାରୁ ଘଉଡ଼ାଇ ଦେଲେ ? ଅନ୍ୟ ସମୟରେ ତ ସେ ମତେ ଘର ଭିତରକୁ ଡ଼ାକନ୍ତି ।

ବେଣାରେ : (ହସି) ତମକୁ କାହିଁକି ବାହାରୁ ବାହାରୁ ଘଉଡ଼ାଇ ଦେଲେ, ତା' ଡ଼ାମଲେ ନିଜେ ଜାଣନ୍ତି । ମୋ ମୁହଁ କଳା ପଡ଼ିଗଲା ବୋଲି ତମ ଭାବିବାର କାରଣ ହେଉଛି—ଡ଼ାମଲେ ତମକୁ ବାହାରେ ଆଉଟା ପାନେ ଦେଇଛନ୍ତି । ମୋ ମୁହଁ କାହିଁକି କଳା ପଡ଼ିବ ? ମୋ ମୁହଁ ଠିକ୍ ଥିଲା ।

ସୁଖାତ୍ମେ : (କାଶୀକରଙ୍କୁ) ମି. ଲର୍ଡ ! ମୁଁ ନିବେଦନ କରୁଛି କି, ଏହି ସାକ୍ଷୀ ଯାହା ଦେଖିଲେ—ସେ ନିଜେ ଜାଣନ୍ତି କାହିଁକି ସେ ତାହା ବର୍ଣ୍ଣନା କରିବା ଅଧାରୁ ରୋକି ଦେଲେ···ସେ ଯାହାହେଉ, ସେ ଯାହା ଦେଖିଛନ୍ତି ତାହା ରେକର୍ଡ଼ କରାଯାଉ । ଯେ କୌଣସି ନିରପେକ୍ଷ ପର୍ଯ୍ୟବେକ୍ଷକଙ୍କ ଆଗରେ ମଧ୍ୟ ତାହା ସ୍ପଷ୍ଟ କରି ଦେଉଛି କି ଆସାମୀଙ୍କ ଆଚରଣ ନିଶ୍ଚିତଭାବେ ସନ୍ଦେହଜନକ ଥିଲା ।

ବେଣାରେ : ସେମିତି କିଛି ସେଥିରୁ ପ୍ରମାଣିତ ହେଉନାହିଁ । କାଲି ହୁଏତ ପ୍ରିନ୍‌ସିପାଲଙ୍କ ଅଫିସରେ ମତେ କିଏ ଦେଖିବ । ତା ଅର୍ଥ କଅଣ, ମୋ ଆଚରଣ ସନ୍ଦେହ-ଜନକ ? ହୁଁଃ— ଆମ Principalଙ୍କ ବୟସ ୬୫ ବର୍ଷ ।

ସୁଖାମ୍ବେ : ମି. ଲର୍ଡ଼ ! ମୁଁ ନିବେଦନ କରୁଛି କି ଆସାମୀ ଏ ଯେଉଁ ବିବୃତି ଦେଇଛନ୍ତି ତାହା ମଧ୍ୟ ରେକର୍ଡ଼ କରାଯାଉ । କାରଣ ତାହା ଆମେ ସାକ୍ଷ୍ୟ ପ୍ରମାଣ ଭାବେ ଉପସ୍ଥାପିତ କରିବାକୁ ଚାହୁଁ ।

ବେଣାରେ : ଆପଣ ଯଦି ଚାହାନ୍ତି ତ, ମୁଁ ଆପଣଙ୍କୁ ଆହୁରି ୨୫ ଜଣଙ୍କ ନାମ ଓ ଠିକଣା ଦେବି, ଯେଉଁମାନଙ୍କ ସହିତ ମୁଁ କେତେବେଳେ ନା କେତେବେଳେ ଏକୁଟିଆ ରହିଛି । ଟ୍ରାୟାଲ କରୁଛନ୍ତି । ଟ୍ରାୟାଲ ! ହୁଁ । ସନ୍ଦେହ ଜନକ !···ଶବ୍ଦ ମାନଙ୍କର ଅର୍ଥ ହିଁ ଆପଣମାନେ ଜାଣନ୍ତି ନାହିଁ ।

[କାର୍ଣ୍ଣିକ ଫୋଙ୍ଗେଙ୍କୁ ଇଙ୍ଗିତ ଦେବା]

ସୁଖାମ୍ବେ . ମି. ଲର୍ଡ଼ ! ଆସାମୀଙ୍କ ଏ ବିବୃତିକୁ ମଧ୍ୟ ମୁଁ ଗୁରୁତ୍ୱ ପୂର୍ଣ୍ଣ ମନେକରେ । ତେଣୁ ଏହାମଧ୍ୟ ସାକ୍ଷ୍ୟ ପ୍ରମାଣ ଭାବେ ନୋଟ କରାଯାଉ ।

ମିଷ୍ଟର କାଣୀକର : (ଦାନ୍ତଖୁଣ୍ଟି) କେଉଁ ବିବୃତି ? ସେ ଯେ କହିଲେ, ଆପଣ ଶବ୍ଦମାନଙ୍କର ଅର୍ଥ ଜାଣନ୍ତି ନାହିଁ ବୋଲି ?

ସୁଖାମ୍ବେ : ନା—ନା—୨୫ ଜଣଙ୍କ ନାମ ଓ ଠିକଣା, ଯାହାଙ୍କ ସହିତ ସେ—

ବେଣାରେ : ଏଇ କିଛି ସମୟତଳେ ତ ମୁଁ ଏଠି ମିଷ୍ଟର ସାମନ୍ତଙ୍କ ସହିତ ଏକୁଟିଆ ଥିଲି । ନିଅନ୍ତୁ, ତାଙ୍କ ନାମ ଟିପି ରଖନ୍ତୁ—ଚୁପ୍ କାହିଁକି ?

ସାମନ୍ତ : (ହଠାତ୍ ଉଠି) ନା. ନା, ସେତେବେଳେ ଏ ମହିଳା ବେଶ୍ ଭଲ ଆଚରଣ ଦେଖାଇଛନ୍ତି । ଆମେ ମ୍ୟାଜିକ୍ ସୋ ଆଉ ମୋହିନୀବିଦ୍ୟା ପ୍ରଭୃତି ସମ୍ପର୍କରେ କଥାବାର୍ତ୍ତା କରୁଥିଲୁ ।

ସୁଖାମ୍ରେ : ମି. ଲର୍ଡ଼ ! ମୁଁ ନିବେଦନ କରୁଛି କି ଏଇ ମୋହମୀବଦ୍ୟା ସମ୍ପର୍କରେ ଉଲ୍ଲେଖ ଅତି ଗୁରୁତ୍ୱପୂର୍ଣ୍ଣ ହୋଇଥିବାରୁ ତାହା ମଧ୍ୟ ସାକ୍ଷ୍ୟ ପ୍ରମାଣ ଭାବେ ରେକର୍ଡ କରାଯାଉ ।

ମିଷ୍ଟର କାଣୀକର : (ଦାନ୍ତ ଖୁଣ୍ଟି) କିନ୍ତୁ ସୁଖାମ୍ରେ, ଏସବୁ ଏ ମକଦ୍ଦମାର ପରିସର ଭିତରକୁ କେତେଦୂର ଆସୁଛି ?

କାର୍ଣ୍ଣିକ : ଏ କେବଳ ଏକ ରିହାଲସଲ ।

ପୋଙ୍ଗେ : ଖାଲି ଗୋଟାଏ ଖେଳ । ଖେଳ, ତା'ଛଡ଼ା ଆଉ କିଛି ନୁହେଁ । ଏ ଟ୍ରାୟାଲ ସମ୍ପର୍କରେ ଆମ ଭିତରୁ କିଏ ସିରିୟସ ଅଛକି ? କେବଳ ମଜାପାଇଁ କରାଯାଉଛି, ସୁଖାମ୍ରେ ! ଗୃଲୁ' (କାର୍ଣ୍ଣିକଙ୍କୁ) ମୋର ମନେ ହେଉଛି ସୁଖାମ୍ରେ ବେଶ ଭଲ ଓକିଲ, ତାଙ୍କର ପ୍ରାକଟିସ୍ ତେବେ ଭଲ ନୁହେଁ କେମିତି ?

ସାମନ୍ତ : (ମିସେସ୍ କାଣୀକରଙ୍କୁ) କିନ୍ତୁ ମୋହମୀବଦ୍ୟା ମୁଁ ଯାହା କହିଲି, ସେଥିରୁ ଅର୍ଥ ସେମିତି କିଛି ନୁହେଁ, କେବଳ ମାମୁଲି ଯାଦୁବିଦ୍ୟା ।

ପୋଙ୍ଗେ : (ତାଙ୍କୁ ବସାଇ) ଆପଣ ବସନ୍ତୁ । ଏସବୁ କେବଳ ମଜାପାଇଁ ହେଉଛି ।

କାର୍ଣ୍ଣିକ : ସୁଖାମ୍ରେ, ବନ୍ଦକର ନାହିଁ । ମକଦ୍ଦମା ଚଲାଅ—କଅଣ ମିସେସ୍ କାଣୀକର ? ଆପଣଙ୍କ ମତ କଅଣ !

ମିସେସ୍ କାଣୀକର : ବେଶ ଜମି ଗ୍ରଲିଛି । ମୁଁ ଏମିତି କଳ୍ପନା କରି ନଥିଲି । ସୁଖାମ୍ରେ ! ଗୃଲୁରଖ । ବନ୍ଦ କରନାହିଁ ।

ସୁଖାମ୍ରେ : (ଉତ୍ସାହିତ ହୋଇ) ମିଷ୍ଟର ରୋକଡେ, ବର୍ତ୍ତମାନ ଆପଣ ସାକ୍ଷୀବାକ୍ସ ଛାଡ଼ ପାରନ୍ତି ।

(ରୋକଡ଼େ ସ୍ୱସ୍ତିର ନିଶ୍ୱାସ ମାରି ସାକ୍ଷୀ ବାକ୍ସରୁ ଓହ୍ଲାଇବା ଓ ସିଧା ଭିତର ରୁମକୁ ଗୃଲିଯିବା)

ଘୃଖାମ୍ରେ : ଏଥର ମିଷ୍ଟର ସାମନ୍ତ !

ସାମନ୍ତ : (ହବ୍‌ତ ଭାବେ ଚାଲି) ମତେ ଡାକଲେ ?

ଘୃଖାମ୍ରେ : ଆସନ୍ତୁ । (ସାକ୍ଷୀ ବାକ୍‌ସକୁ ଦେଖାଇବା) ଭୟ କରନ୍ତୁ ନାହିଁ । ଆପଣ କେବଳ···

ସାମନ୍ତ : ମତେ ଯାହା ପଚରାଯିବ, ସେଥିର ଜବାବ ଦେବ— ଏଇଆ ତ ?

ଘୃଖାମ୍ରେ : ବାଃ, ଆପଣ ତ ବେଶ ବୁଦ୍ଧିମାନ ଅଛନ୍ତି ।

ମିସେସ୍‌କାର୍ଣିକର : ଏଥିରେ କିଛି ବ୍ୟସ୍ତ ହେବାର ନାହିଁ । ଏତ କେବଳ ପ୍ରାକ୍‌ଟିସ୍ ଟ୍ରାୟାଲ, ଅସଲ ଖେଳ ପଡ଼ିବ ରାତିରେ ।

ସାମନ୍ତ : ହଁ, ହଁ ରାତିରେ ତ । ମୁଁ ଆଦୌ ଭୟ କରୁନାହିଁ । ମୁଁ କେବଳ ଯାହା ଟିକିଏ ହଡ଼ବଡ଼େଇ ଯାଉଛି, (ଘୃଖାମ୍ରେଙ୍କୁ) ମୁଁ ଶପଥ ନେବ ତ ? ଏମିତି ଖାଲି ଅଭ୍ୟାସ ପାଇଁ ।

ଘୃଖାମ୍ରେ : ବେଶ୍ ବେଶ୍ । ଗୋକଡ଼େ !

[ଗୋକଡ଼େ ନଥିବା ]

ସାମନ୍ତ : ସେ ବୋଧହୁଏ ଭିତରକୁ ଯାଇଛନ୍ତି । ମୁଁ ନିଜେ କରୁଛି (ଦଉଡ଼ଯାଇ ଡ଼କ୍‌ସିନାରୀ ଆଣିବା ଓ ତା' ଉପରେ ହାତରଖି) ମୁଁ ରଘୁନାଥ ସାମନ୍ତ ଏତଦ୍ୱାରା ଶପଥ କରୁଛି ଯେ, ମୁଁ ସତ କହିବ, ସତଛଡ଼ା ଆଉ କିଛି କହିବ ନାହିଁ । ପୂରା ସତ କହିବ— ଯାହା ଏ ମୋକଦ୍ଦମା ସମ୍ପର୍କରେ ସତ । ଅବଶ୍ୟ ଏ ମୋକଦ୍ଦମା ସମ୍ପର୍କରେ ଯାହା ସତ, ତାହା ପ୍ରକୃତରେ ସତ ନୁହେଁ । ମୁଁ କିନ୍ତୁ ପ୍ରାକ୍‌ଟିସ୍ ପାଇଁ ଶପଥ ନେଉଛି ।

[ ଡ଼କ୍‌ସନାରୀ ଉପରେ ଆହୁରି ହାତରଖି]

ଦେଖନ୍ତୁ, ମୁଁ ମିଛ କହିବାର ପାପ ମୁଣ୍ଡେଇବାକୁ, ଚାହେଁ ନାହିଁ । ମୁଁ ବଡ଼ ଧାର୍ମିକ ଲୋକ । —ହଁ, ଶପଥ ସରିଲା । ବର୍ତ୍ତମାନ—(ସାର୍ଜେଣ୍ଟକ୍‌କୁ ଯାଇ) ପଚାରନ୍ତୁ । (ମିସେସ୍ କାଶୀକରଙ୍କୁ) ଦେଖନ୍ତୁ, ମୁଁ ଜମା ଡରନାହିଁ । ମୁଁ ଏସବୁକୁ ନୂଆ ହୋଇଥିବାରୁ କେବଳ ଯାହା ଟିକିଏ ହଡ଼ବଡ଼େଇ ଯାଇଥିଲି । (ସୁଖାମେଙ୍କୁ) ବେଶ—ଆରେଇ ଚାଲନ୍ତୁ ।

ସୁଖାମେ : ନାମ, ବୃତ୍ତି, ଏସବୁ ହୋଇ ସାରିଛି ।

ସାମନ୍ତ : ନାଁ, ଆପଣ ଏସବୁ ପଚାରିବାକୁ ଚାହାନ୍ତି ? ପଚାରନ୍ତୁ ।

ସୁଖାମେ : ନା, ବର୍ତ୍ତମାନ ଶୁଣନ୍ତୁ ମିଷ୍ଟର···

ସାମନ୍ତ : ସାମନ୍ତ । ଅନେକ ସମୟରେ ଲୋକେ ହଠାତ୍ ମୋର ନାଁ ଭୁଲି ଯାଆନ୍ତି । ସେଇଥିପାଇଁ କହିଦେବା ଦରକାର ପଡ଼େ ।

ସୁଖାମେ : ଠିକ୍ ଅଛି, ଠିକ୍ ଅଛି । ଆଚ୍ଛା ମିଷ୍ଟର ସାମନ୍ତ, ଆପଣ ଏ ଆସାମୀ ମିସ୍ ବେଣାରେଙ୍କୁ ଜାଣନ୍ତି ?

ସାମନ୍ତ : (ଗର୍ବର ସହ) ନିଶ୍ଚୟ, ତେବେ ସେମିତି ଭଲଭାବରେ ନୁହେଁ । ଦୁଇଘଣ୍ଟା ପରିଚୟରେ କେତେ ଭଲ ଭାବରେ ବା ଜଣକୁ ଜାଣି ହେବ ? କିନ୍ତୁ ତାଙ୍କ ସହିତ ମୋର ପରିଚୟ ହୋଇଛି, ସେ ବେଶ୍ ଭଲ ଲୋକ ।

ସୁଖାମେ : କିନ୍ତୁ ଆପଣଙ୍କର ଏ ମତ—ଅର୍ଥାତ ତାଙ୍କ ପ୍ରତି ଯେଉଁ ଭଲ ଧାରଣା ଆପଣଙ୍କ ମନରେ ଜାତ ହୋଇଛି, ତାହା ଅଦାଲତ ଆଗରେ ବିଚାରଯୋଗ୍ୟ ବୋଲି ତ ଧରାଯାଇ ପାରିବ ନାହିଁ, କଅଣ କହୁଛନ୍ତି ?

ସାମନ୍ତ : ହଁ, ନାଁ ନାଁ, କାହିଁକି ନୁହେଁ ? ନିଶ୍ଚୟ ଧରାଯାଇ ପାରିବ । ମୋ ମାଆ ତ ଜଣଙ୍କ ମୁହଁକୁ ଦେଖିବାର ମୁହୂର୍ତ୍ତକ

ମଧ୍ୟରେ ସେ ଲୋକଙ୍କୁ ଚିହ୍ନି ନେଇ ପାରନ୍ତି । ବିଚରା ଏବେ ବହୁତ ବୁଢ଼ୀ ହୋଇ ଗଲେଣି, ଆଉ ଭଲ ଭାବରେ ଦେଖି ପାରୁନାହାନ୍ତି ।

[ରୋକଡ଼େ ପ୍ରବେଶ କରି ଜମାଦାର ଭାବେ ନିଜ ସ୍ଥାନ ନେବା—ବେଣାରେ ଉତ୍କରେ ବସିଥିବା, ତାଙ୍କ ମୁହଁ ଗୋଟିଏ ହାତରେ ଭରା ଦେଇ, ତାଙ୍କ ଆଖି ବନ୍ଦ ଥାଏ]

ସାମନ୍ତ : ସେ ବୋଧହୁଏ ଶୋଇ ପଡ଼ିଛନ୍ତି, ମିସ୍ ବେଣାରଙ୍କ କଥା କହୁଛି ।

ବେଣାରେ : (ଆଖି ସେମିତି ବନ୍ଦ ଥାଇ) ନାଁ ମୁଁ ଚେଇଁଛି । ମତେ ହଠାତରେ ନିଦ ହୁଏ ନାହିଁ । ଯେତେବେଳେ ଗୃହିଁଲେ ସେତେବେଳେ ମୁଁ କେବେ ଶୋଇ ପାରେନାହିଁ ।

ସାମନ୍ତ : ମୋର ସେ ଅସୁବିଧା ନାହିଁ, ମୁଁ ଯେତେବେଳେ ଗୃହିଁବି ଶୋଇଯାଇ ପାରିବ । (ସୁଖାନେଙ୍କୁ) ଆପଣ ?

ସୁଖାନେ : ମୋ ନିଜର ପ୍ରକୃତି ଅଲଗା । ମତେ ଯେତେବେଳେ ନିଦ ଆସେ ହଠାତ୍ ଆସେ, ନଚେତ ମୁଁ ଘଣ୍ଟା ଘଣ୍ଟା ଧରି ନଶୋଇ ଚେଇଁ ରହିପାରେ ।

ମିଷ୍ଟର କାଶୀକର : (କାନକୁଣ୍ଡେଇ ଓ ଦାନ୍ତ ଖୁଣ୍ଟି) ଆପଣ ମୁଣ୍ଡରେ ଖାଣ୍ଟି ଘିଅ ତେଲ ମାଲିସ କଲେ ଭଲ ହେବ । ମୁଁ ସେମିତି କରେ । ଯେତେ ବଡ଼ ସାମାଜିକ ସମସ୍ୟା ଥାଉନା କାହିଁକି, ଘିଅତେଲ ମୁଣ୍ଡରେ ମାଖିଲେ, ମୁଁ ଆରାମରେ ଶୋଇପାରେ । ମୂଳକଥା ହେଉଛି ଆପଣ ଯଦି ଶାନ୍ତିରେ ଶୋଇପାରିଲେ, ତାହାଲେ ଆପଣଙ୍କ ମସ୍ତିଷ୍କ ବି ଥଣ୍ଡା ରହିବ । ମସ୍ତିଷ୍କ ଥଣ୍ଡା ନ ରହିଲେ, ଏସବୁ ସାମାଜିକ ସମସ୍ୟା ସମାଧାନ କିପରି କରିହେବ ?

ବଡ଼କଥା ହେଉଛି ମସ୍ତିଷ୍କ ଆଉ ପେଟ, ଏ ଦୁଇଟି ଠିକ୍ ଥିବା ଦରକାର ।

ସାମନ୍ତ : ଠିକ୍ । (ସୁଖାମେ୍କୁ) ଆପଣଙ୍କ ପ୍ରଶ୍ନ ସବୁ ପଚାରନ୍ତୁ ।

ସୁଖାମେ୍ : (ଉତ୍ସାହ ସହିତ ଆରମ୍ଭକରି) ମିଷ୍ଟର—

ସାମନ୍ତ : ସାମନ୍ତ ।

ସୁଖାମେ୍ : ହିଁ, ମିଷ୍ଟର ସାମନ୍ତ, ଗୋଇନ୍ଦା କହୁ ଆସାମୀ ମିସ୍ ବେଣାରେଙ୍କୁ ଦେଖିଥିଲେ ପ୍ରଫେସର ଡାମଲେଙ୍କ ରୁମ୍‌ରେ—ରାତି ଅନ୍ଧାର ହୋଇ ଆସିଲା ବେଳକୁ ।

ସାମନ୍ତ : ଠିକ୍ ।

ସୁଖାମେ୍ : ସେ ସମୟରେ ପ୍ରଫେସର ଡାମଲେ ଆଉ ମିସ୍ ବେଣାରେଙ୍କ ଛଡ଼ା ସେଠି ଆଉ କେହି ନଥିଲେ ।

ସାମନ୍ତ : ହିଁ, ଏକଥା ତ ମିଷ୍ଟର ଗୋଇନ୍ଦା କହିଛନ୍ତି— ଏଥର ମତେ କିଛି ପଚାରନ୍ତୁ ।

ସୁଖାମେ୍ : ହିଁ, ପଚାରୁଛି । ସେଥିର ଅଧଘଣ୍ଟା ପରେ ଆପଣ ସେଠି ଯାଇ ପହଞ୍ଚିଲେ ।

ସାମନ୍ତ : କେଉଁଠି ? ନା, ନା, ତା କେମିତି ହେବ ? ସେ ରୁମ୍ ତ ବମ୍ବେରେ । ଆଉ ମୁଁ ଥିଲି ଏଠି, ଗାଁରେ । ନା, ଏସବୁ ବାଜେକଥା । ମୁଁ ତ ଆପଣଙ୍କ ପ୍ରଫେସର ଡାମଲେଙ୍କୁ ଆଦୌ ଜାଣେ ନାହିଁ । ମୁଁ କେମିତି ତାଙ୍କ ରୁମ୍‌କୁ ଗଲି ? ଆପଣ କଅଣ କହିବାକୁ ଚାହୁଁଛନ୍ତି ?

ସୁଖାମେ୍ : ହିଁ, ଆପଣ ସେଠି ପହଞ୍ଚିଲେ ।

ସାମନ୍ତ : ଆପଣ ସବୁ ଗୋଳମାଳିଆ କରି ଦେଉଛନ୍ତି ଓକିଲ ସାହେବ ।

ସୁଖାମ୍ରେ : ମିଷ୍ଟର ସାମନ୍ତ, ଏ ଟ୍ରାୟାଲ ପାଇଁ ଆମକୁ କେତେକଥା ମନେକରି ନେବାକୁ ପଡ଼ିବ ।

କାର୍ତ୍ତିକ : ଏଠି ଯାହା ହେଉଛି ସବୁ ତ କାଳ୍ପନିକ । ଆପଣ ଆଉ ଅଧିକ କଅଣ ଭାବୁଛନ୍ତି ? ସବୁ କାଳ୍ପନିକ ।

ପୋଙ୍ଗେ : କେବଳ ଅଭିଯୁକ୍ତ ଆସାମୀ ହିଁ ଅସଲ ।

ସାମନ୍ତ : ଆଚ୍ଛା ମୁସ୍କିଲ, ହଉ ଅଧଘଣ୍ଟା ପରେ ମୁଁ ଯାଇ ପହଞ୍ଚିଲି । ତାପରେ କଅଣ ହେଲା ?

ସୁଖାମ୍ରେ : ଆପଣ କୁହନ୍ତୁ ।

ସାମନ୍ତ : ମୁଁ କେମିତି କହିବି ?

ସୁଖାମ୍ରେ : ଆପଣଙ୍କୁ ତ କହିବାକୁ ହେବ ।

ସାମନ୍ତ : ବଡ଼ ମୁସ୍କିଲ । ହଉ, ମତେ ହିଁ କହିବାକୁ ହେବ କିନ୍ତୁ ମୁଁ କଅଣ କେମିତି କହିବି ? ଆସାମୀ ଆଉ, ପ୍ରଫେସର ଡାମଲେ— ରୁମ୍…ସଞ୍ଜ…

ପୋଙ୍ଗେ : ବେଶ୍ ଅନ୍ଧାର ହୋଇ ଆସିଥିଲା…

କାର୍ତ୍ତିକ : ଅଧଘଣ୍ଟାପରେ, ଅର୍ଥାତ ଯେତେବେଳେ ବହୁତ ଅନ୍ଧାର ହୋଇ ଯାଇଥିଲା, କଲେଜ କମ୍ପାଉଣ୍ଡ ପୁରା ଶୂନଶାନ—

ସାମନ୍ତ : (ହଠାତ୍) ବେଶ୍, ପଚାରନ୍ତୁ, ମୁଁ ସେଠି ପହଞ୍ଚିଲି, ନା ? ହଁ ମୁଁ ପହଞ୍ଚିଲି । ପହଞ୍ଚି କଅଣ ଦେଖିଲି ? ଦେଖିଲି କବାଟ ବନ୍ଦ ।

ସୁଖାମ୍ରେ : କବାଟ ବନ୍ଦ ଥିଲା ?

ସାମନ୍ତ : ହଁ କବାଟ ବନ୍ଦ ଥିଲା । ବାହାରୁ ନୁହେଁ ଭିତରୁ । ମୁଁ କବାଟ ବାଡେଇଲି । ନାଁ, ନାଁ ବେଲ ବଜାଇଲି । କବାଟ ଖୋଲିଲା । ଜଣେ ଅଜଣା ଲୋକ ମୋ ଆଗରେ ଠିଆ ହେଲେ । କିଏ ଭାବନ୍ତୁ ତ ? ପ୍ରଫେସର ଡାମଲେ । ମୁଁ ତାଙ୍କୁ ପ୍ରଥମଥର ପାଇଁ ଦେଖିଲି । ତେଣୁ ମତେ ଅଜଣା ଲାଗିଲେ । ଲାଗିବା କଥା ନୁହେଁ କି ?

ଫୋଙ୍ଗେ : ବାଃ ବାଃ ମିଷ୍ଟର ସାମନ୍ତ, ଚମତ୍କାର ।

ମିସେସ କାଶୀକର : (କାର୍ତ୍ତିକଙ୍କୁ) ସେତ ବେଶ୍ ଭଲଭାବେ ସାକ୍ଷ୍ୟ ଦେଉଛନ୍ତି ।

ସାମନ୍ତ : (ସାହାସପାଇ) ଡ଼ାମଲେ ମୋ ଆଗରେ ଠିଆ ହୋଇଥିଲେ । ସେ ମତେ ଦେଖିବା କ୍ଷଣି ବଡ଼ ବିବ୍ରତ ହୋଇ ପଚାରିଲେ, କିଏ ଆପଣ ? କାହାକୁ ଖୋଜୁଛନ୍ତି ?

ଫୋଙ୍ଗେ : (କାର୍ତ୍ତିକଙ୍କୁ) ବାଃ, ସେତ ଡ଼ାମଲେଙ୍କୁ ଭଲ ବର୍ଣ୍ଣନା କରୁଛନ୍ତି ।

ସାମନ୍ତ : ମୁଁ ଉତ୍ତର ଦେଲି, ପ୍ରଫେସର ଡ଼ାମଲେଙ୍କୁ । ସେ କହିଲେ—ସେ ଘରେ ନାହାନ୍ତି । ତା'ପରେ ସେ ଧଡ଼ କରି କବାଟ ବନ୍ଦ କରିଦେଲେ । ମୁଁ ସେଠି ମୁହୂର୍ତ୍ତକ ପାଇଁ ସ୍ତମ୍ଭୀଭୂତ ହୋଇ ଠିଆ ହୋଇଗଲି । ମୁଁ ତା'ପରେ ଭାବିଲି, ଘରକୁ ଫେରିଯିବି ନା ପୁଣି ବେଲ ବଜେଇବି । କାରଣ ତାଙ୍କ ପାଖରେ ମୋର ଗୋଟାଏ ବଡ଼ କାମଥିଲା ।

ସୁଖାତ୍ମେ : କି କାମ ?

ସାମନ୍ତ : କି—କାମ—ଏଇ ଧରି ନିଅନ୍ତୁ କିଛି ଗୋଟାଏ । ମନେ କରନ୍ତୁ, ମୁଁ ପ୍ରଫେସର ଡ଼ାମଲେଙ୍କର ଏକ ଲେକ୍‌ଚର ପ୍ରୋଗ୍ରାମ ପାଇଁ ତାଙ୍କ ସହିତ କଥାବାର୍ତ୍ତା କରିବାକୁ ଯାଇଥିଲି । ସେ ଲେକ୍‌ଚର ଦିଅନ୍ତି ତ ? ନା, ନାହିଁ ? ମୁଁ ଖାଲି ପଚାରୁଛି, ସେ ଜଣେ ପ୍ରଫେସର । ତେଣୁ ନିଶ୍ଚୟ ଲେକ୍‌ଚର ଦେଉଥିବେ । ତେଣୁ ମୁଁ ସେଠି ଠିଆହୋଇ ଭାବିଲି, ଲେକ୍‌ଚର ବ୍ୟବସ୍ଥା ନକରି ମୁଁ ଫେରିଯିବି କିପରି ? ସେତେବେଳେ ମୁଁ ଭିତରୁ ଗୋଟାଏ ଅସ୍ପଷ୍ଟ ଶବ୍ଦ ଶୁଣିଲି । ଯେମିତି କିଏ କାନ୍ଦୁଛି ।

ମିସେସ କାଶୀକର : କାନ୍ଦିବା ଶବ୍ଦ ?

ସାମନ୍ତ : ହଁ, ଅସ୍ପଷ୍ଟ ଭାବେ ଶୁଭୁଥିଲା । ତେବେ ଯେ କାନ୍ଦୁଥିଲେ, ସେ ଜଣେ ସ୍ତ୍ରୀ ଲୋକ ଜଣା ପଡ଼ୁଥିଲେ ।

ସୁଖାତ୍ମେ : (ଉତ୍ସାହରେ) ତା'ପରେ, ତା'ପରେ ?

ସାମନ୍ତ : କିଛି ସମୟ ପାଇଁ ସେ ସେଇଁଠି ଥିଲି, ସେଠି ଠିଆହୋଇ ରହିଲି । ମାନେ ମୁଁ··· ସେ···ମାନେ ମୁଁ···ଠିକ୍ ବୁଝି ପାରିଲି ନାହିଁ, କିଏ କାନ୍ଦୁଛି । ଆପଣ ମତେ ପଚାରିବେ, ସେ ପ୍ରଫେସର ଡାମଲେଙ୍କ ପରିବାରର କେହି ସ୍ତ୍ରୀଲୋକ ବୋଲି ମୁଁ କାହିଁକି ନ ଭାବିଲି ? କିନ୍ତୁ କାନ୍ଦିବାର ଢଙ୍ଗରୁ ମୁଁ ଅନୁମାନ କଲି, ସେ ପ୍ରଫେସର ଡାମଲେଙ୍କ ପରିବାରର କେହି ନୁହନ୍ତି । କାହିଁକି ? କାରଣ ସେ ଲୋକ ଚାପା ଗଳାରେ କାନ୍ଦୁଥିଲେ । ପରିବାରର କେହି ହୋଇଥିଲେ, ନିଜଘରେ ଚୁପ୍‌ଚାପିଆ କାନ୍ଦନ୍ତେ କାହିଁକି ? ଏସବୁ ଚିନ୍ତାକରି, ମୁଁ ସେଠି ଠିଆହୋଇ ରହିଲି, ତା'ପରେ ମୁଁ କେତେକ କଥା ଶୁଣିବାକୁ ପାଇଲି ।

ମିସେସ୍ କାଶୀକର : କ'ଣ ?

କାର୍ଣ୍ଣିକ ଓ ପୋଙ୍ଖେ : କିଏ କହୁଥିଲା ?

ସାମନ୍ତ : ଦେଖନ୍ତୁ ଆପଣମାନେ ତ ପଚାରିବା କଥା ନୁହେଁ । ଯାହା ପ୍ରଶ୍ନ ଓକିଲ ସାହେବ ପଚାରିବେ ।

ସୁଖାତ୍ମେ ବେଶ୍, କିଏ କହୁଥିଲା ?

ସାମନ୍ତ : ସେ ମହିଳା, ଯେ ଭିତରେ ଥିଲେ ।

ମିସେସ କାଶୀକର : କଅଣ କହିଲେ ମହିଳା ? କିଏ ସେ ମହିଳା ?

[ନିଜେ ଅଜାଣତରେ ବେଣାରେଙ୍କୁ ଗୃହିଁବା]

ସାମନ୍ତ : ନା, ଆପଣ ମତେ ପଚାର ପାରିବେ ନାହିଁ—ସେ ପଚାରିବେ, ଓକିଲ ସାହେବ ।

ସୁଖାମ୍ନେ : ମୁଁ ପଗ୍ଗରୁଛି । ଶୀଘ୍ର କୁହନ୍ତୁ ମିଷ୍ଟର ସାମନ୍ତ, ଆପଣ କଅଣ ଶୁଣିଲେ ? ସମସ୍ତ ନଷ୍ଟ କରନ୍ତୁ ନାହିଁ । ଶୀଘ୍ର କୁହନ୍ତୁ । Please ।

ସାମନ୍ତ : ମୁଁ ଶୁଣିଲି--- ସବୁ କହିବ ?

ସୁଖାମ୍ନେ : ଯାହା ଆପଣ ମନେକରି ପାରୁଚନ୍ତି କୁହନ୍ତୁ ।

ସାମନ୍ତ : (ନିଜହାତରେ ଧରିଥିବା ଏକ ବହି ତରବରଭାବେ ଓଲଟାଇ ଗୋଟିଏ ପୃଷ୍ଠା ଦେଖି) ତମେ ଯଦି ମତେ ଏ ଅବସ୍ଥାରେ ତ୍ୟାଗ କରିବ, ମୁଁ କଅଣ କରିବ ?

ବେଣାରେ ଉଦ୍‌ବଗ୍ନ ହୋଇ ଉଠିବା]

ମିସେସ୍ କାଶୀକର : ଏଇକଥା ସେ ମହିଳା କହୁଥିଲେ ?

ସାମନ୍ତ : (ବହି ଦେଖି ଦେଖି) "ମୁଁ କେମିତି କହିବ ?"

ସୁଖାମ୍ନେ : ତା' ହେଲେ କିଏ ଆଉ କହିବ ?

ସାମନ୍ତ : ନାଁ, ନାଁ, ମୁଁ ପ୍ରଫେସରଙ୍କ ଉତ୍ତର ଆପଣଙ୍କୁ କହୁଥିଲି, ପ୍ରଫେସର ଡାମଲେ ସେ ମହିଳାଙ୍କୁ ଯାହା ଉତ୍ତର ଦେଲେ ।

ସୁଖାମ୍ନେ : ଓ, I see ।

ସାମନ୍ତ : (କହି ଚାଲିଥାଏ) "ତମେ କୁଆଡେ ଯିବ, କଅଣ କରିବ, ସେଇଟା ପୁରାପୂରି ତମ ନିଜ ସମସ୍ୟା । ତମ ପ୍ରତି ମୋର ଯଥେଷ୍ଟ ସହାନୁଭୂତି ଅଛି । କିନ୍ତୁ ମୁଁ ନାଗୂର, ମୁଁ କିଛିକରି ପାରିବ ନାହିଁ । ମୋର ମାନ, ମର୍ଯ୍ୟାଦା, ମତେ ରକ୍ଷା କରିବାକୁ ପଡ଼ିବ ।" ତା'ପରେ ସେ ମହିଳା କହିଲେ, "ତମେ ତମ ମାନ ମର୍ଯ୍ୟାଦା କଥା କହୁଛ ? ତମେ ଏତେ ହୃଦୟହୀନ ?" ସେତେବେଳେ ସେ ଭଦ୍ରଲୋକ ଉତ୍ତର ଦେଲେ, "ସମାଜଟା ହିଁ ହୃଦୟହୀନ ।"

ମିଷ୍ଟର କାଶୀକର : (କାନ ଜୋରରେ କୁଣ୍ଡେଇ ଦେଇ) I see, I see.

ସୁଖାମ୍ବେ : (ଆଶ୍ଚର୍ଯ୍ୟ ହୋଇ) ଚମତ୍କାର, ଚମତ୍କାର ।

ସାମନ୍ତ : "ତମେ ଯଦି ମତେ ତ୍ୟାଗ କରିବ ତା'ହେଲେ ମୋର ଆତ୍ମହତ୍ୟା ଛଡ଼ା ଅନ୍ୟ ବାଟ ନାହିଁ ।" "ତା'ହେଲେ ସେଇଆ କର । ମୋର ମଧ୍ୟ ଅନ୍ୟ ବାଟ ନାହିଁ । ଅବଶ୍ୟ ତମେ ଆତ୍ମହତ୍ୟା କଲେ, ମୋର ବଡ଼ ଦୁଃଖ ହେବ ।"

ସୁଖାମ୍ବେ : ବେଶ୍ ଥ୍ରିଲିଙ୍ଗ୍ ।

ସାମନ୍ତ : ଭଦ୍ର ଲୋକ କହିଲେ "ତମର ଏ ଧମକରେ କିନ୍ତୁ ମୁଁ ମୋ ନିଷ୍ପତ୍ତିରୁ ତିଳେ ମାତ୍ର ଟଳିଯିବି ନାହିଁ ।" ସେତେବେଳେ ସେ ମହିଳା କହିଲେ, "ଦେଖ, ଦୁଇ ଦୁଇଟା ଜୀବନର ହତ୍ୟା" ଦୁଇଟା ? ନା ଭୁଲ୍ କହିଲି, ଗୋଟାଏ ନା-ନା—ଠିକ୍ ଦୁଇଟା—ହଁ, "ଦୁଇ ଦୁଇଟା ଜୀବନର ହତ୍ୟା ଅପରାଧରୁ ତମେ ବର୍ତ୍ତିଯାଇ ପାରିବ ନାହିଁ ।" ତା'ପରେ ଏକ ଭୟଙ୍କର ହସର ଶବ୍ଦ ଶୁଣିଲି ।

ବେଣାରେ : (ହଠାତ୍ ଚିତ୍କାର କରି) ହଉ, ସେତିକି ହେଉ ।

ମିଷ୍ଟର କାଶୀକର : (ଟେବୁଲ ବାଡ଼େଇ) ଅର୍ଡ଼ର, ଅର୍ଡ଼ର ।

ବେଣାରେ : ଏ ସବୁ ମିଛ କଥା । ପୁରା ମିଛ ।

ପୋଙ୍କେ : ନିଶ୍ଚୟ ମିଛ । ତା'ବୋଲି ହେଲା କଅଣ ?

କାର୍ତ୍ତିକ : ଏହା ମିଛ ହେଲେ ବି ବେଶ୍ ଏଫେକ୍‌ଟିଭ୍ ।

ମିସେସ୍ କାଶୀକର : ମିଷ୍ଟର ସାମନ୍ତ—କହି ଚାଲ ।

ବେଣାରେ : ନା, ଏସବୁ ବନ୍ଦ କରନ୍ତୁ । ବନ୍ଦ କରନ୍ତୁ ।

ସାମନ୍ତ : (ବ୍ୟସ୍ତ ହୋଇ) କିନ୍ତୁ କଥା କଅଣ ?

ବେଣାରେ : ଏହା ବନ୍ଦ କରିବାକୁ ହେବ । ଏଥିର ଗୋଟିଏ ଶବ୍ଦ ବି ସତ ନୁହେଁ ।

ସାମନ୍ତ : ହଁ, ତାତ ଠିକ୍ ।

ବେଣାରେ : ସବୁ ମନଗଢ଼ା କଥା । ସବୁ ମିଛ ।

ସାମନ୍ତ : ତା ନିଶ୍ଚୟ ।

ବେଣାରେ : ତମେ ଏଠି—ତମେ ଏଠି ନିପଟ ମିଛ କଥା କହି ଗ୍ଲଲଛ ।

ସାମନ୍ତ : ମିଛ ଛଡା କଅଣ ହୋଇପାରେ ? (ହାତରେ ଲୁଚାଇ ଧରି ଥିବା ବହି ବାହାର କରି) ମୁଁ ଯାହା କହୁଛି ସବୁ ଏ ଉପନ୍ୟାସରୁ କହୁଛି ।

(ସମସ୍ତେ ହସିବା)

ସୁଖାମ୍ବେ : ଆଃ କି ମଜା ! ବେଶ୍ ହସାଇଲେ ମିଷ୍ଟର ସାମନ୍ତ । କହି ଚାଲନ୍ତୁ । କହି ଚାଲନ୍ତୁ । ତାପରେ କଅଣ ହେଲା ?

ବେଣାରେ : ଏହାପରେ କେହି ପଦେ ବି କଅଣ କହିଲେ ମୁଁ ଏଠୁ ଚାଲିଯିବି ।

ସୁଖାମ୍ବେ : ମିଷ୍ଟର ସାମନ୍ତ !

ବେଣାରେ : ମୁଁ ଏଠି ସବୁ ଭାଙ୍ଗିରୁଜି ଚୂରମାର କରିଦେବି । ନଷ୍ଟଭ୍ରଷ୍ଟ କରିଦେବି ।

ମିସେସ୍ କାର୍ଣୀକର : କିନ୍ତୁ ମିସ୍ ବେଣାରେ, ତମ ବିବେକ ଯଦି ନିର୍ମଳ ଅଛି ତା'ହେଲେ ତମେ ଏମିତି ଉତ୍ତେଜିତ ହୋଇ ପଡୁଛ କାହିଁକି ?

ବେଣାରେ : ତମେମାନେ ଜାଣିଶୁଣି, ମୋ ବିରୁଦ୍ଧରେ ଏକାଠି ହୋଇ ଷଡ଼ଯନ୍ତ୍ର କରିଛ ।

ସାମନ୍ତ : ନା—ନା—ନା – ମିସ୍ ବେଣାରେ, ସେମିତି କିଛି ନାହିଁ ।

ସୁଖାମ୍ବେ : ମିଷ୍ଟର ସାମନ୍ତ ! ଏଣେ ମୋ ପ୍ରଶ୍ନର ଜବାବ ଦିଅନ୍ତୁ । ପ୍ରଫେସର ଡାମଲେ ଜୋରରେ ହସି ଉଠିଲେ । ତା' ପରେ ଘର ଭିତରେ ଥିବା ସେ ଅଜଣା ସ୍ତ୍ରୀ ଲୋକଟି କଅଣ କଲେ ?

ସାମନ୍ତ : (ବହିର ପୃଷ୍ଠା ଓଲଟାଇ) ରୁହନ୍ତୁ, ରୁହନ୍ତୁ, ସେ ପୃଷ୍ଠାଟି ମିଳୁନାହିଁ ।

ବେଣାରେ : ସାମନ୍ତ, ତମେ ଯଦି ଆଉ ପଦେ ମଧ୍ୟ କିଛି କହିଛ, ତା'ହେଲେ ମୁଁ ତମକୁ···

ସୁଖାନ୍ତେ : ରୁହନ୍ତୁ ମିଷ୍ଟର ସାମନ୍ତ ।

ସାମନ୍ତ : ରୁହନ୍ତୁ, ଗୋଳମାଳଆ ହୋଇଗଲା । ମୁଁ ସେ ପୃଷ୍ଠା ଖୋଜି ପାଉନ ।

ସୁଖାନ୍ତେ : (କାଣୀକରଙ୍କୁ) ମି. ଲର୍ଡ଼ ! ଏପର୍ଯ୍ୟନ୍ତ ଯାହା ସବୁ ଶୁଣାଗଲା, ସେଥିରୁ କେସ୍‌ଟା ଏତେ ପ୍ରମାଣିତ ହୋଇ ସାରିଲାଣି ଯେ ଆଉ ଅଧିକ କିଛି ସାକ୍ଷ୍ୟ ପ୍ରମାଣର ଆବଶ୍ୟକ ନାହିଁ । ଏ ସମସ୍ତ ବିବୃତ୍ତି ଅସାମୀ ବିରୁଦ୍ଧରେ ଆମ ସାକ୍ଷ୍ୟ ପ୍ରମାଣ ଭାବେ ରେକର୍ଡ଼ କରିଯାଉ ।

ମିଷ୍ଟର କାଣୀକର : ଏକଥା ମଞ୍ଜୁର କରାଗଲା ।

ବେଣାରେ : ହଁ, ଲେଖି ନଅନ୍ତୁ । ସବୁ କଥା ଲେଖି ନଅନ୍ତୁ । ନୋଟ ପରେ ନୋଟ୍ ଲେଖି ଚାଲନ୍ତୁ ।

ହଠାତ୍ ତାଙ୍କ ଆଖି ଅଶ୍ରୁପୂର୍ଣ୍ଣ ହୋଇ ଉଠିବା, ସ୍ୱର ରୁଦ୍ଧ ହୋଇଯିବା । ସେ ଅତ୍ୟନ୍ତ ଉତ୍ତେଜିତ ହୋଇ ଉଠିବା— ତାପରେ ଅଶ୍ରୁପ୍ଲାବିତ କଣ୍ଠରେ କହିବା]

ଆପଣମାନେ ମୋର କଅଣ କରିବେ ? ଖାଲି ମକଦ୍ଦମା, ବିଚାର । ଆଉ କଣ ? ( କାନ୍ଦି କାନ୍ଦି ଉଇଙ୍ଗସ୍ ଭିତରକୁ ଚାଲିଯିବା)

[ଗମ୍ଭୀର ନୀରବତା । ସାମନ୍ତ ଛଡ଼ା ଆଉ ସମସ୍ତଙ୍କ ମୁହଁର ଭାବ ପରିବର୍ତ୍ତନ ହେବା । ସମସ୍ତଙ୍କ ମୁହଁରେ ଏକ ଅଦ୍ଭୁତ ଅଥଚ ସତର୍କ ଉତ୍ତେଜନାର ଚିହ୍ନ]

ସାମନ୍ତ : (ସହାନୁଭୂତ ସ୍ୱରରେ) କଅଣ ହେଲା, ଭଦ୍ର ମହିଳାଙ୍କର ହଠାତ୍ କଅଣ ହେଇଗଲା ?

ମିଷ୍ଟର କାଣୀକର : (କାନ କୁଣ୍ଡାଇ ହୋଇ) ଏସବୁ ଅତର୍କୀତ୍ ଅପ୍ରତ୍ୟାଶିତ ଭାବେ ରହସ୍ୟପୂର୍ଣ୍ଣ ହୋଇ ଉଠିଲା । ସୁଖାମ୍ରେ, ଆଜକାଲି ସମଗ୍ର ସମାଜର ବାତାବରଣ ଭ୍ରଷ୍ଟ ହୋଇ ଗଲାଣି । ଆଜ କୌଣସି ଜନସ ପବନ ନୁହେଁ ।

ସୁଖାମ୍ରେ : ସେଇଥିପାଇଁ ହିଁ, ଆମଭଳି ବିଚାରଶୀଳ ଲୋକେ ଏସବୁ ବିଷୟ ଗମ୍ଭୀର ଭାବେ ଚିନ୍ତା କରୁଚୁ । ଏସବୁ କଥାକୁ ହାଲୁକା ଭାବେ ନେଲେ ଚଳିବ ନାହିଁ ।

ମିସେସ୍ କାଣୀକର : ଆପଣ ଠିକ୍ କଥା କହୁଛନ୍ତି ।

ସୁଖାମ୍ରେ : ଖାଲି ଚିନ୍ତା ଯଦି ଯଥେଷ୍ଟ ନହୁଏ, ତା'ହାଲେ ଆମକୁ ଠିକଣା କାର୍ଯ୍ୟ ମଧ୍ୟ କରିବାକୁ ପଡ଼ିବ । କାର୍ଯ୍ୟ, ଆକ୍ସନ ! କଣ କହୁଛ କାର୍ତ୍ତିକ ।

କାର୍ତ୍ତିକ : Yes ଆକ୍ସନ ।

ପୋଙ୍ଗେ : ରାଇଟ୍ ।

ସୁଖାମ୍ରେ : ଏଠି କେବଳ ଭାବ ପ୍ରବଣତା ଯଥେଷ୍ଟ ନୁହେଁ, ଆମ ସମସ୍ତଙ୍କୁ ଏକାଠି ହେବାକୁ ପଡ଼ିବ । ଆମେ ସମସ୍ତେ ମିଶି କାର୍ଯ୍ୟ କରିବା ଦରକାର ।

ମିସେସ୍ କାଣୀକର : କିନ୍ତୁ ପ୍ରକୃତରେ ଘଟିଛି କଅଣ ?

ମିଷ୍ଟର କାଣୀକର : ତମେ ଚୁପ୍ ରୁହ । ସୁଖାମ୍ରେ, କଅଣ ହୋଇଥାଇ ପାରେ ? ତମେ କଅଣ ଅନୁମାନ କରୁଛ ?

ସୁଖାମ୍ରେ : ସେଇଟା ହିଁ ରହସ୍ୟ । (ସାମନ୍ତ ସ୍ତବ୍ଧ ହୋଇ ଠିଆ ହୋଇଥିବା)

ସୁଖାମ୍ରେ : ଆଜ ମୁଁ ଭାବୁଛି ଏ ରହସ୍ୟର ଉତ୍ତର ଆମେ ଜାଣୁ ।

କାର୍ଣ୍ଣିକ-କାଶୀକର :
ପୋଙ୍ଖେ-ରୋକଡେ : } କଅଣ—କଅଣ ?
ମିସେସ୍ କାଶୀକର :

[ବେଣାରେ ଭିତରକୁ ଆସି ଦ୍ୱାର ପାଖରେ ଠିଆ ହେବା]

ସୁଖାତ୍ମେ : (ବେଣାରେଙ୍କୁ ନଦେଖି) well ବନ୍ଧୁଗଣ, ସିଧା କଥା ହେଉଛି ଏହି, ମିଷ୍ଟର ସାମନ୍ତ ଯାହା କହିଲେ, ତାହା ଏ ବହିରୁ ହୋଇଥିଲେ ମଧ୍ୟ ସେଥିରେ କିଛି ସତ୍ୟତା ରହିଛି ।

ମିସେସ୍ କାଶୀକର : ତା'ର ଅର୍ଥ ହେଉଛି, ଆପଣ କହୁଛନ୍ତି, ମିସ୍ ବେଣାରେ ଆଉ ପ୍ରଫେସର ଡାମଲେଙ୍କ ମଧ୍ୟରେ—

ସୁଖାତ୍ମେ : Yes । ଏକଥା ନିଃସନ୍ଦେହ । ଏ ବିଷୟରେ ଆଉ ପ୍ରଶ୍ନର ଅବକାଶ ନାହିଁ ।

ମିସେସ କାଶୀକର : ହେ ଭଗବାନ !

ରୋକଡେ : (ଉତ୍ସାହରେ ଉଠି) ମୁଁ ମୂଳରୁ ଏକଥା ଭାବିଥିଲି ।

ସୁଖାତ୍ମେ : (ବେଣାରେଙ୍କୁ ହଠାତ୍ ଦେଖି) ସ୍...

[ସମସ୍ତେ ହଠାତ୍ ନୀରବ ଓ ବେଣାରେଙ୍କୁ ଚାହିଁ ରହିବା । ସେ ଉଦ୍ଦେଶ୍ୟମୂଳକ ଭାବେ ଭିତରକୁ ଆସି ନିଜ ବ୍ୟାଗ ଆଉ ପର୍ସ ଉଠାଇ ଧରିବା । ସେ ବାହାର ଦ୍ୱାର ନିକଟକୁ ଯାଇ କିଳଣୀ ଖୋଲିବା । ସମସ୍ତେ ଲକ୍ଷ୍ୟ କରୁଥାନ୍ତି । ସେ କବାଟ ଟାଣିବା, କିନ୍ତୁ ଦ୍ୱାର ଖୋଲୁ ନଥାଏ । ସେ ଜୋରରେ ଟାଣିଲେ; କିନ୍ତୁ କବାଟ ବାହାରୁ ବନ୍ଦ ହୋଇ ଯାଇଥିଲା । ସେ ଜୋରରେ କବାଟରେ ବାଡେଇ ଚାଲିଲେ । କିନ୍ତୁ

ତାହା ଖୋଲୁ ନଥାଏ । ସାମନ୍ତ ଛଡ଼ା
ଅନ୍ୟମାନଙ୍କ ମୁହଁରେ ଏକ ବଚନ
ଆନନ୍ଦର ଆଭାସ ]

ସାମନ୍ତ : ଓଃ, କବାଟ ବାହାରୁ ବନ୍ଦ ହୋଇ ଯାଇଛୁ ନାଁ ? ମୁଁ ଯାହା କହୁଥିଲି—ବାହାରୁ ଖୋଲି ଆସିବା ବେଳେ ଛୁଟିକିନଟା ଭଲ ଭାବରେ ଗୋଟିଏ ପଟକୁ ଟାଣି ଦେଇ ନଥିଲେ, ଭିତରୁ କବାଟ ବନ୍ଦ କରିବା କ୍ଷଣି, ବାହାରୁ ମଧ୍ଯ ଛୁଟିକିନ ଆପେ ଆପେ ପଡ଼ିଯିବ, (ନିଜେ ପଇ ଖୋଲିବାର ଚେଷ୍ଟା କରିବା) ଏ କବାଟର ଏଇ ଦୋଷ । ଏବେ କଅଣ କରାଯିବ ? ଅଫିସ ସବୁ ବନ୍ଦ ଥିବାରୁ ଏବେ ବାହାରେ ବି କେହି ନଥିବେ । କେମିତି ଖୋଲା ଯିବ ? ଅଚ୍ଛା ମୁସ୍କିଲ । (ନିଜେ ଚେଷ୍ଟାକରି) ନାଁ, ଆଉ ଖୋଲିବ ନାହିଁ । ବାହାରୁ ବନ୍ଦ ।

[ବେଣାରେ କବାଟ ପାଖରେ ଠିଆ
ହୋଇଥିବା]

ମିଷ୍ଟର କାଣୀକର : (କାନ କୁଣ୍ଡେଇ) ଆଚ୍ଛା ! ମୋ ବିଚାରରେ ବର୍ତ୍ତମାନ ପରିସ୍ଥିତିରେ ମକଦ୍ଦମା ଚାଲୁ ରଖିବା ହିଁ ଠିକ୍ ହେବ ।

ସୁଖାମ୍ନେ : (ଓକିଲ ଢ଼ଙ୍ଗରେ) Yes ମି. ଲର୍ଡ଼. (ଖୁସି ମନରେ) ଏଥର ଆସାମୀଙ୍କୁ ସାକ୍ଷୀ ବକ୍ସକୁ ଡକାଯାଉ ।

# ତୃତୀୟ ଅଙ୍କ

[ଦ୍ୱିତୀୟ ଅଙ୍କ ଶେଷ ବେଳର ପରିବେଶ]

ସୁଖାମ୍ୱେ : ମି. ଲର୍ଡ୍, ଏଥର ଆସାମୀକୁ ସାକ୍ଷୀ ବକ୍ସକୁ ଡକାଯାଉ ।

ମିଷ୍ଟର କାଶୀକର : ଆସାମୀ ମିସ ବେଣାରେ, ସାକ୍ଷୀ ବକ୍ସକୁ ଆସ ।

[ବେଣାରେ ଯେଉଁଠି ସେଠି ଠିଆ ହୋଇ ରହିବା]

ମିଷ୍ଟର କାଶୀକର : ଇନ୍‌କ୍ରେଡ଼ିବଲ—ଅଦାଲତ ପ୍ରତି ଏତେ ବେଖାତିର ! ଜମାଦାର ରେକଡ୍ରେ ! ଆସାମୀକୁ କାଠ ଗଡ଼ାକୁ ନେଇଆସ ।

ରେକଡ୍ରେ : (ଭୟଭୀତଭାବେ) ମୁଁ...

ମିସେସ୍ କାଶୀକର : ରହନ୍ତୁ ମୁଁ ନେଇ ଆସେ । ରେକଡ୍ରେ କାହିଁକି ନେବ ? (ବେଣାରେ ପାଖକୁ ଯାଇ ତାକୁ କାଠଗଡ଼ା ଆଡ଼କୁ ଟାଣିବା) ଚାଲ, ଚାଲ ବେଣାରେ ।

[ସେ ବେଣାରେକୁ କାଠଗଡ଼ାରେ ଠିଆ କରାଇବା । ବେଣାରେ ମୁହଁ ଆତଙ୍କିତ]

ସୁଖାମ୍ୱେ : (ନିଜ ଗାଉନ୍ ପିନ୍ଧି ପିନ୍ଧି ବେଣାରେ ଆଡ଼କୁ ଅନାଇ) ମି. ଲର୍ଡ୍ ! ଆମ ଆଗରେ ଥିବା ମକଦ୍ଦମା ଯେପରି ଗୁରୁତର ଆକାର ଧାରଣ କରିଛି, ସେ ଦୃଷ୍ଟିରୁ ମୁଁ ବିବେଚନା କରୁଛି କି ଯଦି ବିଚାରପତି ମହାଶୟ ନିଜ ଗାଉନ୍ ପିନ୍ଧି ନିଅନ୍ତି, ତା'ହେଲେ ଭଲ ହୁଅନ୍ତା ।

ମିଷ୍ଟର କାଶୀକର : ଠିକ୍ ? ରେକ୍ଡ୍ରେ, ମୋ ଗାଉନ୍ ?

[ବେକଡ଼େ ଗାଉନ୍ ଖୋଲ ତାଙ୍କୁ ଦେବା ଓ ସେ ତାହା ପିନ୍ଧିବା । ତା'ପରେ ତାଙ୍କର ଗାମ୍ଭୀର୍ଯ୍ୟ ବଢ଼ି ଉଠିବା]

ସୁଖାତ୍ମେ : ମି. ସାମନ୍ତ, ମିସେସ୍ କାଶୀକର, ପୋଙ୍ଗେ, କାର୍ତ୍ତିକ ! ଯେ ଯେଉଁଠି ବସିବା କଥା ବସି ଯାଆନ୍ତୁ ।

[ସୁଖାତ୍ମେ ନିଜକୁ ସଜାଡ଼ିନେଇ, କିଛି ସମୟ ଆଖି ବନ୍ଦକରି, ଚିନ୍ତା କରିବା । ତା'ପରେ ନିଜ ଗାଲରେ ଆପେ ଆପେ ଆସ୍ତେ ଆସ୍ତେ ଚୁମୁଡ଼ା ମାରି ପ୍ରାର୍ଥନା କଲାଭଳି ଦୁଇ ତିନିଥର ଶୂନ୍ୟରେ ନମସ୍କାର କରିବା]

ସୁଖାତ୍ମେ : କୌଣସି ନୂଆ କଥା ହାତକୁ ନେଲାବେଳେ ଏହିପରି ଘରର ଦେବତାଙ୍କୁ ପ୍ରାର୍ଥନା କରିବାକୁ ମୋ ବାପା ଶିଖାଇଛନ୍ତି । ତଦ୍ଦ୍ୱାରା ନିଜକୁ ବଡ ପବିତ୍ର ଲାଗେ । ମନରେ ନୂଆ ବଳ ଆସେ । (ନୂଆବଳ ପାଇଲାପରି ସେ ପହିଲମାନ ପରି ଏପଟ ସେପଟ ଦୁଇଥର ପଦଚାଳନା କରିବା, ତାପରେ କଣ୍ଠ ଉଠିବା) ବେଶ୍ । ନଓ ଟୁ ବିଜିନେସ । ଆସାମୀ ଶପଥ ନିଅନ୍ତୁ ।

[ବେକଡ଼େ ଡିକ୍‌ସନାରୀ ନେଇ ବେଣାରେ ଆଗରେ ଠିଆ ହେବା, ବେଣାରେ ଚୁପ୍‌ଚାପ୍—ଗୋଟାଏ ମୂର୍ତ୍ତିପରି ସ୍ଥାଣୁ-ଠିଆ ହୋଇଥିବା]

ମିଷ୍ଟର କାଶୀକର : (ନିଜଟୋପି ଠିକ୍ କରି) ଆସାମୀ ମିସ୍ ବେଣାରେ, ଶପଥନିଅ ।

ସାମନ୍ତ : ଶପଥ ନେଇ ନିଅନ୍ତୁ ମିସ୍ ବେଣାରେ, ଏତ କେବଳ ଗୋଟାଏ ଖେଳ ।

[ବେଣାରେ ଚୁପ୍]

ମିସେସ କାଣୀକର : (ଆଗକୁ ଆସି) ସେ ବହି ମତେ ଦିଅ । ମୁଁ ଶପଥର ବ୍ୟବସ୍ଥା କରୁଛି । ବେଣାରେ, ଏ ବହି ଛୁଇଁ କୁହ, ମୁଁ ଯାହା କହିବ ସତ କହିବ, ସତଛଡ଼ା ଆଉ କିଛି କହିବ ନାହିଁ । କୁହ !

[ବେଣାରେ ନୀରବ]

ମିଷ୍ଟର କାଣୀକର : ବଡ଼ ଆଶ୍ଚର୍ଯ୍ୟ କଥା ।

ମିସେସ୍ କାଣୀକର : (ଡିକ୍ସିନାରି ବ୍ରୋକଡ଼େଙ୍କୁ ଦେଇ) ସେ ଶପଥ ନେଇଛନ୍ତି ବୋଲି ଭାବ ନିଆ ଯାଉନାହିଁ କାହିଁକି ? ତାଙ୍କ ହାତ ତ ଡିକ୍ସିନାରି ଉପରେ ଥିଲା । ଏଥର ଯାହା ପଚାରିବା କଥା ପଚାରନ୍ତୁ ସୁଖାମ୍ନେ ।

ମିଷ୍ଟର କାଣୀକର : ଅସାମୀ ମିସ୍ ବେଣାରେ, ଅଦାଲତ ତମକୁ ତାଗିଦ୍ କରି ଦେଉଛନ୍ତି କି ଏଣିକି ଅଦାଲତ ପ୍ରତି ଅବମାନନା ହେଲା ଭଳି କୌଣସି ଆଚରଣ ତମେ ପ୍ରକାଶ କରିବ ନାହିଁ । ବେଶ୍ ! ମିଷ୍ଟର ସୁଖାମ୍ନେ ଚାଲୁ ଆପଣଙ୍କ ଜେରା ।

କାର୍ତ୍ତିକ : Yes, ପଚାରି ଚାଲନ୍ତୁ ।

ସୁଖାମ୍ନେ : (ବେଣାରେ ସମ୍ମୁଖରେ କିଛି ସମୟ ପଦଚାରଣ କରି, ହଠାତ୍ ତାଙ୍କ ଆଡ଼କୁ ଆଙ୍ଗୁଠି ଦେଖାଇ) ତମ ନାଁ ଲୀଲା ଡ଼ି ମଲେ ?

ସାମନ୍ତ : (ହଠାତ୍ ଚିତ୍କାର କରି) ନା—ନା—ବେଣାରେ, ଡ଼ାମଲେ ତ ପ୍ରଫେସର ।

ମିସେସ୍ କାଣୀକର : ଟିକିଏ ଚୁପ୍ ରହି ଶୁଣନ୍ତୁ, ସେ କଅଣ ଉତ୍ତର ଦେଉଛନ୍ତି, ଦେଖନ୍ତୁ ।

ସୁଖାମ୍ନେ : ମିସ୍ ଲୀଲା ବେଣାରେ !

[ବେଣାରେ ଶୁଣିବାକୁ ବା ବୁଝିବାକୁ ଚେଷ୍ଟା କରିବା ]

ସୁଖାମ୍ପେ : ତମ ବୟସ କେତେ ହେଲା ଅଦାଲତ ଆଗରେ କହିବ ?

[ବେଣାରେ ନୀରବ]

ମିଷ୍ଟର କାଶୀକର : ଅସାମୀ ବେଣାରେ ସାକ୍ଷୀଭାବେ ତମକୁ ଯାହାସବୁ ପ୍ରଶ୍ନ କରାଯାଉଛି ସେ ସବୁର ଉତ୍ତର ଦେବା ଦାୟିତ୍ୱ ତୁମ ଉପରେ ରହିଛି—(ଠିକଏ ରହି) ଆସାମୀ ବେଣାରେ, ତୁମେ ଚୁପ୍ କାହିଁକି ? ପ୍ରଶ୍ନର ଜବାବ ଦିଅ ।

ମିସେସ୍ କାଶୀକର : ସେ ଜଅଣ ଉତ୍ତର ଦେବେ ? ତାଙ୍କ ବୟସ ମୁଁ କହୁଛି । ତାଙ୍କ ବୟସ ୩୨ ବର୍ଷରୁ ବେଶୀ । ହୁଏତ ବର୍ଷେ ଦି' ବର୍ଷ ବେଶୀ । ତାଙ୍କ ମୁହଁକୁ ଦେଖନ୍ତୁ ।

ସୁଖାତ୍ମେ : ଧନ୍ୟବାଦ ମିସେସ୍ କାଶୀକର ।

ମିଷ୍ଟର କାଶୀକର : ରୁହନ୍ତୁ ରୁହନ୍ତୁ, ଧନ୍ୟବାଦ ମିସେସ୍ କାଶୀକର କହିବାର ମତଲବ କଅଣ ? ଆସାମୀ ତ ଆଉରି ତାଙ୍କ ବୟସ ପ୍ରକାଶ କରି ନାହାନ୍ତି । ମୁଁ ମନ ଦେଇ ଶୁଣୁଛି ସବୁ-କଥା । ଆସାମୀ ମିସ୍ ବେଣାରେ, ତମ ବୟସ ?

ମିସେସ୍ କାଶୀକର : କିନ୍ତୁ ମୁଁ ତ···

ମିଷ୍ଟର କାଶୀକର : ଆସାମୀକୁ ପ୍ରଶ୍ନ କରାଯିବା ବେଳେ, ଅଦାଲତ ଆଉ କାହା ମୁହଁର ଉତ୍ତରକୁ ଗ୍ରହଣ କରି ନପାରନ୍ତି । ମଝିରେ ବାଧା ସୃଷ୍ଟି କର ନାହିଁ । ଆସାମୀ ବେଣାରେ, ଉତ୍ତର ଦିଅ ।

[ବେଣାରେ ନୀରବ]

ସାମନ୍ତ : ମୋତେ ମନେ ହେଉଛି ଜଣେ ମହିଳାଙ୍କୁ ତାଙ୍କ ବୟସ ପଚାରିବା ଶିଷ୍ଟତା ନୁହେଁ ।

ମିଷ୍ଟର କାଶୀକର : ଏତେ ଅବାଧ୍ୟତା ! କୌଣସି ପ୍ରଶ୍ନର ଜବାବ ନାହିଁ ? ଏଇଟା ଅଦାଲତ ନା ଆଉ କଣ ?

[ରାଗରେ ଟେବୁଲ ବାଡ଼େଇବା]

ଫୋଙ୍ଗେ : ନିଶ୍ଚୟ, ଏଇଟା ଅଦାଲତର ଅବମାନନା—

ମିଷ୍ଟର କାଶୀକର : ଆସାମୀର ଏହି ମତ ଗଡ଼ର କଣ୍ଟ ପ୍ରତିକାର ଖୋଜ ବାହାର କରିବାକୁ ହେବ । ଏହା ଅଦାଲତର ମର୍ଯ୍ୟାଦାର ଭ୍ରଷ୍ଟ । ପ୍ରଶ୍ନର ଜବାବ ଦେବାପାଇଁ ଅସାମୀଙ୍କୁ ଦଶ ସେକେଣ୍ଡ ସମୟ ଦିଆଗଲା । (ଘଡ଼ି ଦେଖି) ଆଉ ଅବାଠାତା ବରଦାସ୍ତ କରାଯିବ ନାହିଁ ।

ସୁଖାତ୍ମେ : (ନାଟକୀୟ ଭଙ୍ଗୀରେ) ମି. ଲର୍ଡ଼, ଆସାମୀ ଚୁପ ରହିବ । ତା'ର ମୋର ପ୍ରଶ୍ନର ଜବାବ ପ୍ରାପ୍ୟ ମିଳି ଯାଇଛି । ତେଣୁ ମୁଁ ପ୍ରଶ୍ନ ଫେରାଇ ନେଉଛି । I take it back.

ମିଷ୍ଟର କାଶୀକର : ବେଶ୍ । ଆସାମୀର ବୟସ ୩୪ ବର୍ଷରୁ ଊଣା ନୁହେଁ । ମୁଁ ଏକଥା ଲେଖି ଦେଇପାରେ । ମୁଁ କଅଣ କହୁଛି କି, ଆମ ସମାଜରେ ବାଲ୍ୟ ବିବାହ ପ୍ରଥା ପୁଣି ପ୍ରଚଳିତ ହେବା ଉଚିତ । ଝିଅମାନେ ପିଲା ଥାଉଁ ଥାଉଁ ତାଙ୍କୁ ବିବାହ ଦେଇଦେବା ଭଲ । ତା'ହେଲେ ସବୁ ପ୍ରକାର ଅନାଚାର ଆପେ ଆପେ ବନ୍ଦ ହେଇଯିବ । ଆମ ସମାଜର ଯଦି କେହି ବଡ଼ କ୍ଷତିକର ଥାଆନ୍ତି, ତା'ହାଲେ ସେ ହେଉଛନ୍ତି ଅଗର କର ଓ ଡ଼. କେ କାର୍ଭେଙ୍କ ପରି ସଂସ୍କାରକମାନେ । ଏଇଟା ମୋର ସ୍ପଷ୍ଟମତ । କଅଣ କହୁଛ ସୁଖାତ୍ମେ ?

ସୁଖାତ୍ମେ : (ଉତ୍କଳ ଭାବରେ ମୁଣ୍ଡ ନୁଆଇଁ) ୟେସ୍ ମି: ଲର୍ଡ଼ !

[ଗ୍ରେକଡ଼େ ଏ ମଧ୍ୟରେ କାଶୀକରଙ୍କ ମନ୍ତବ୍ୟ ତରବରରେ ଗୋଟିଏ ନୋଟ ବୁକ୍‌ରେ ଲେଖି ନେଇଥିବା—ବେଶରେ ଚୁପ୍‌ଚାପ]

ସୁଖାମ୍ଭେ : (ହଠାତ୍ ବେଣାରେଙ୍କ ପଛପଟକୁ ଯାଇ)
ମିସ୍ ବେଣାରେ !

[ବେଣାରେ, ଚମକି ତାଙ୍କ ପାଖରୁ ଟିକିଏ ଘୁଞ୍ଚି ଯିବା]

ସୁଖାମ୍ଭେ : ମିସ୍ ବେଣାରେ ତମେ ଅଦାଲତକୁ କହିବ କି ତମେ ଏତେ ବୟସଯାଏ କାହିଁକି ବାହା ନହୋଇ ରହିଛ ? (ଟିକିଏ ରହି) ଆଚ୍ଛା, ମୁଁ ପ୍ରଶ୍ନ ଆଉ ଟିକିଏ ବଦଳାଇ ପଚାରୁଛି। ତମ ଜୀବନରେ ଏ ଯାଏଁ କେତେଥର ବିବାହ ସୁଯୋଗ ଆସିଛି, ଆଉ ତମେ କପରି ଓ କାହିଁକି ହରାଇଛ ? କୁହ, ଅଦାଲତ ଆଗରେ ପ୍ରକାଶ କର।

ମିଷ୍ଟର କାଶୀକର : ଆସାମୀ ମିସ୍ ବେଣାରେ, ଉତ୍ତର ଦିଅ।
(ହାତରୁ ଘଡ଼ି ବାହାରକରି ଟେବୁଲରେ ନିଜ ଆଗରେ ରଖିବା। ମିସ୍ ବେଣାରେ ଚୁପ୍) This is too much.

ମିସେସ୍ କାଶୀକର : ମୋର ମନେ ହେଉଛି ସେ ଜମା କିଛି ଜବାବ ନଦେବାକୁ ସ୍ଥିର କରି ନେଇଛନ୍ତି।

[ବେଣାରେ ଚୁପ୍]

ସୁଖାମ୍ଭେ : ମି: ଲର୍ଡ ! ମୁଁ ପ୍ରସ୍ତାବ କରୁଛି କି ସାକ୍ଷୀଙ୍କୁ ଜେରା କରିବା ସମସ୍ତ ସ୍ଥଗିତ ରଖାଯାଉ। ଯଥା ସମୟରେ ପୁଣି ତା' ଆରମ୍ଭ କରାଯାଇ ପାରିବ।

[ମିସ୍ ବେଣାରେ କାଠଗଡ଼ା ଛାଡ଼ି ଦ୍ୱାର ପାଖକୁ ଯିବା—ଦ୍ୱାର ବନ୍ଦ ରହିଛି। ପୋଙ୍ଗେ ସେଠି ଜଗି ରହିଥିବାରୁ ମିସ୍ ବେଣାରେ [ଗୋଟିଏ ପଟକୁ ଘୁଞ୍ଚିଯିବା। ମିସେସ୍ କାଶୀକର ତାଙ୍କ

ବାହାଧର ତାଙ୍କୁ ଅସାମୀ ଠିଆହେବା ପାଇଁ ଥିବା ଡ଼କ୍‌କୁ ନେଇଯିବା ]

ମିଷ୍ଟର କାଶୀକର : Next ଉଇଟ୍‌ନେସ୍‌ ।

ସୁଖାମ୍ନେ : ମିସେସ୍‌ କାଶୀକର ।

[ମିସେସ୍‌ କାଶୀକର ତରବରରେ ଶାଢୀ ସଜାଡ଼ି ବଡ ଉତ୍ସାହରେ ସାକ୍ଷୀ ବକ୍‌ସକୁ ଯିବା]

ମିଷ୍ଟର କାଶୀକର : (ସୁଖାମ୍ନେଙ୍କୁ) ଦେଖ, ଦେଖ, ସାକ୍ଷ୍ୟ ଦେବାକୁ ସେ କେମିତି ଉଦ୍‌ଗ୍ରୀବ । ଡ଼ାକ ପଡ଼୍‌ ନ ପଡ଼ୁଣୁ କାଠଗଡ଼ାରେ ହାଜର ।

ମିସେସ୍‌ କାଶୀକର : ଏକଥା କହିବାର ଆବଶ୍ୟକତା ନାହିଁ । (ତାପରେ ନାଟକର ସାକ୍ଷୀଭାବେ) ମୁଁ ଶପଥ ନେଇ ସାରିଛି । ବେଣାରେ ଆଉ ମୁଁ ଦୁ' ଜଣ ଯାକ ସେତେବେଳେ ଏକା ସାଙ୍ଗରେ ଶପଥ ନେଇଛୁ । ମୁଁ ନିଶ୍ଚୟ ସତ କହିବ, ମୁଁ ଡରିବ କାହିଁକ ?

ସୁଖାମ୍ନେ : ଠିକ୍ କଥା । ଅଚ୍ଛା, ମିସେସ୍ କାଶୀକର, ଗୋଟିଏ କଥା ଆପଣ କହି ପାରିବେ—ମିସ୍‌ ବେଣାରେ ଏତେ ବୟସ ପର୍ଯ୍ୟନ୍ତ କାହିଁକି ଅବିବାହିତା ରହିଛନ୍ତି ?

ମିସେସ୍‌ କାଶୀକର : ଏଥିରେ କହିବାର କଅଣ ଅଛି ? ବାହା ହୋଇ ନାହାନ୍ତି, ସେଇଥି ପାଇଁ ଅବିବାହିତା ରହିଛନ୍ତି ।

ସୁଖାମ୍ନେ : That's it. କିନ୍ତୁ ମିସେସ୍‌ କାଶୀକର, ୩୨ ବର୍ଷ ବୟସରେ···

ମିଷ୍ଟର କାଶୀକର : ନାଁ ୩୪ ବର୍ଷ, ମନେ ରଖନ୍ତୁ ୩୪ ବର୍ଷ ।

ସୁଖାମ୍ନେ : ହଁ ୩୪ । ଆଚ୍ଛା ମିସେସ୍ କାଶୀକର, ଏକଥା କେମିତି ଯେ ୩୪ ବର୍ଷ ଯାଏଁ ଶିକ୍ଷିତା—ଖାନଦାନ ଘରର ବାଳିକା—

ମିସେସ୍ କାଣୀକର : ବାଳିକା ? ମହିଳା କୁହନ୍ତୁ ମହିଳା । ବାଳିକା ! ସେ ଯଦି ବାଳିକା, ତାହେଲେ ମୁଁ ତ ଯୁବତୀ !

ସୁଖାତ୍ମେ : ହଉ, ତାଙ୍କୁ ମହିଳା ହିଁ କୁହାଯାଉ । କିନ୍ତୁ ଏତେବର୍ଷ ଯାଏଁ ସେ ବିବାହ ନକଲେ କାହିଁକି ? ଆପଣ ଆମକୁ କିଛି ବୁଝାଇ ଦେଇ ପାରିବେ ?

ମିସେସ୍ କାଣୀକର : ଏଥିରେ ବୁଝାଇବାର କଅଣ ଅଛି ? ଯେ ଚାହିଁବ, ସେ ଯେ କୌଣସି ମୁହୂର୍ତ୍ତରେ ବାହାହେଇ ପାରିବ ।

ସୁଖାତ୍ମେ : ଆପଣ କହିବାକୁ ଚାହାନ୍ତି ଯେ, ମିସ୍ ବେଣେରେ ବାହା ହେବାପାଇଁ ଚାହୁଁ ନାହାନ୍ତି ।

ମିସେସ୍ କାଣୀକର : ଆପଣ ଭାବୁଚନ୍ତି କଅଣ ? ଆଜି କାଲି ଯଦି ବିବାହ ବିନା ସବୁକଥା ମିଳିପାରେ, ବିବାହର ଆବଶ୍ୟକତା କଅଣ ? ସେମାନେ ଆରାମ ଚାହାନ୍ତି । ଦାୟିତ୍ୱ ଚାହାନ୍ତି ନାହିଁ । ମୁଁ କହିବା ରଖୁଛି, ଆମ ସମୟରେ କୌଣସି ଝିଅ କାଣୀ କୋତରା ଅସୁନ୍ଦରୀ ହୋଇଥିଲେ, ମଧ୍ୟ ତାର ବିବାହରେ କିଛି ଅସୁବିଧା ରହୁ ନଥିଲା । ଆଉ ଏବେ ? ଝିଅମାନେ ନିଜେ ରୋଜଗାର କରିବା ଯେବଠୁଁ ଆରମ୍ଭ ହେଲାଣି—ସବୁ ବିଗିଡ଼ିଗଲାଣି । ଯଦି ଆମ ସମାଜର ଚାରିଆଡ଼େ ଅନାଚାର ବ୍ୟାପି ଗଲାଣି, ସେଥିର କାରଣ ହେଉଛି, ଏହି ସ୍ତ୍ରୀ ଲୋକଙ୍କୁ ରୋଜଗାର ସୁବିଧା ମିଳିବା ।

[ ରେକର୍ଡ଼େ ସବୁ ଟିପୁଥିବା ]

ରେକର୍ଡ ଭଲ କରି ଟିପି ନେଲୁତ ? (ସୁଖାତ୍ମେଙ୍କୁ) ହଉ, ଆହୁରି ପଚାରନ୍ତୁ ।

ସୁଖାତ୍ମେ : ବେଶ, ମିସେସ୍ କାଣୀକର, ଆପଣ କହିଲେ ଯେ, ବିବାହ ବିନା ଯଦି ସବୁ ମିଳିଯାଏ, ତାହାହେଲେ ବିବାହର ଆବଶ୍ୟକତା କଅଣ ?

ମିସେସ୍ କାଶୀକର : ହିଁ, ତା ମୁଁ କହିଲି ।

ସୁଖାତ୍ମେ : ଆଚ୍ଛା, ଏଇ ଯେ ସବୁ ମିଳିପିବା କଥା କହିଲେ, ସେଥିର ଗୋଟାଏ ଉଦାହରଣ ଦେବେ ?

ମିସେସ୍ କାଶୀକର : ମାନେ— ମାନେ —(ବିବ୍ରତ ହୋଇ ପଡ଼ିବା)

ମିଷ୍ଟର କାଶୀକର : (କାନ କୁଣ୍ଡେଇ ହେଇ) କମ୍ ଅନ୍, ତମର ଏ ବୟସରେ ଲଜ୍ଜାର କାରଣ କଣ ଅଛି ? ପ୍ରଶ୍ନର ଉତ୍ତର ଦିଅ । ତମର ବୟସ ହେଲାଣି, ଅଥଚ ବୁଦ୍ଧି ବଢ଼ିଲା ନାହିଁ ।

ମିସେସ୍ କାଶୀକର : ଏଥିରେ ମୋ ବୟସ କଥା କାହିଁକି ଉଠୁଛି ?

ମିଷ୍ଟର କାଶୀକର : ତାଙ୍କର ପ୍ରଶ୍ନର ଜବାବ ଦିଅ ।

ମିସେସ୍ କାଶୀକର : ସବୁକଥା ମାନେ, ଅବିବାହିତ ଜୀବନରେ ଯାହା ମିଳେ, ସେଇସବୁ ।

ସୁଖାତ୍ମେ : ଆପଣ କଅଣ ଭାବୁ ନାହାନ୍ତି ଯେ, ଅସାମୀ ସମ୍ପର୍କରେ ଏପରି କିଛି ମନ୍ତବ୍ୟ ଦେବା ଅନ୍ୟାୟ ?

ମିସେସ୍ କାଶୀକର : ନାଁ, ମୁଁ ସେମିତି ଭାବୁ ନାହିଁ । ଆଜକାଲି ତ ଏମିତି ଅନେକ ଉଦାହରଣ ଦେଖିବାକୁ ମିଳୁଛି ।

ସୁଖାତ୍ମେ : ଅନ୍ୟମାନଙ୍କ କଥା ଛାଡ଼ନ୍ତୁ, ଆସାମୀଙ୍କ କଥା କହନ୍ତୁ । ମିସ୍ ବେଣାରେଙ୍କ ସମ୍ପର୍କରେ, ଆପଣ କିଛି ପ୍ରମାଣ ପାଇଛନ୍ତି କି ? କିଛି ପ୍ରମାଣ ? ଯଦି ଜାଣନ୍ତି କୁହନ୍ତୁ ।

ମିସେସ୍ କାଶୀକର : ଅଧିକା ପ୍ରମାଣ କଅଣ ? ତାଙ୍କର ଆଚରଣ କଣ ଆପଣ ନିଜେ ଦେଖିପାରୁ ନାହାନ୍ତି ? ସେ ଆମ ଭିତରୁ ଜଣେ । ତେଣୁ ମୁଁ କିଛି କହିବାକୁ ଚାହୁଁ ନାହିଁ । କିନ୍ତୁ ମରଦଙ୍କ ସହ ଜଣେ ଅବିବାହିତା ସ୍ତ୍ରୀ ବେଶୀ ମିଳାମିଶା ହେବା, ସେ ମରଦ ଯେତେ ପରିଚିତ ହୁଅନ୍ତୁ ନାଁ କାହିଁକି, ସେଥିରେ ତ କିଛି ସୀମା ରହିବା

ଦରକାର । ମିସ୍ ବେଣାରେ କେତେ ଜୋରରେ ହସାହସି କରନ୍ତି, କେମିତି ଗୀତ, ନାଚ, ଖେଳ, କୁଦ, ହାସ ପରିହାସ କରନ୍ତି, ଦେଖି ନାହାନ୍ତି ? ତା'ଛଡ଼ା ଦିନ ନାହିଁ, ରାତି ନାହିଁ, ଯାହା ଚାରି, ତା' ସାଙ୍ଗରେ ବୁଲବୁଲ କରିବା---

ସୁଖାମ୍ନେ : (ପ୍ରମାଣ ସମ୍ପର୍କରେ ହତାଶ ହୋଇ)
ମିସେସ୍ କାଶୀକର, ଏଥିରୁ ଖାଲି, ଏତିକ ଜଣା ପଡ଼ୁଛି ଯେ, ସେ ବେଶ୍ ଖୋଲା ମିଜାଜୀ ଲୋକ ।

ମିସେସ୍ କାଶୀକର : ଖାଲି ମିଜାଜ୍ ଖୋଲା ନୁହେଁ, ସବୁ କଥାରେ ଖୋଲା । ମୁଁ ଏକଥା କହିବା ଉଚିତ ନୁହେଁ, କିନ୍ତୁ ଯେହେତୁ ଅଦାଲତରେ କଥାଟା ଉଠିଛି, ମୁଁ କହିବାକୁ ବାଧ । (ହାତରେ ବୁଣୁଥିବା ଉଲ୍ ସୁଖାମ୍ନେଙ୍କୁ ଦେଇ) ଏସବୁ ଟିକିଏ ଧରି ଥାଆନ୍ତୁ । ଆଚ୍ଛା, ଆମର ଯେ କୌଣସି ପୋଗ୍ରାମ ପରେ ସେ କାହିଁକି କେବଳ ପ୍ରଫେସର ଡାମଲେଙ୍କ ସହ ଘରକୁ ଫେରନ୍ତି ?

[ବେଣାରେ ଜାଣିଶୁଣି ଚୁପ୍]

ସୁଖାମ୍ନେ : I see. ପ୍ରୋଗ୍ରାମ ପରେ ରାତିରେ ମିସ୍ ବେଣାରେ ତାଙ୍କୁ ଘରେ ପହଞ୍ଚାଇ ଦେବାକୁ କେବଳ ପ୍ରଫେସର ଡାମଲେଙ୍କ ସାହାଯ୍ୟ ଲୋଡ଼ନ୍ତି···

ପୋଙ୍ଗେ ଓ କାର୍ଣ୍ଣିକ ପରସ୍ପର ମୁହଁ ଚୁହାଁ ଚୁହିଁ ହେଉଥିବା]

ମିସେସ୍ କାଶୀକର : ତା ଠିକ୍ । ଥରେ ମୁଁ ଆଉ ମି. କାଶୀକର···ସେଇଟା ସେପ୍ଟେମ୍ବର ମାସ···(କାଶୀକରଙ୍କୁ)ସେପ୍ଟେମ୍ବରନା ?

ମିଷ୍ଟର କାଶୀକର : ସାକ୍ଷୀକୁ କେହି କିଛି ବତାଇ ଦେବା ଉଚିତ ନୁହେଁ । ତମକୁ ପ୍ରଶ୍ନ ହେଉଚି ତମେ ନିଜେ ଉତ୍ତର ଦିଅ ।

ମିସେସ୍ କାଶୀକର : ହଁ, ସେଇଟା ସେପ୍ଟେମ୍ବର ମାସ । ମିସ୍ ବେଣାରେ, ସେଦିନ ପ୍ରୋଗ୍ରାମ ପରେ ରାତିରେ ଘରକୁ ଫେରିବାର

ଥିଲା । ମୁଁ ଆଜ ମିଷ୍ଟର କାଶୀକର କହିଲୁ, ଆସ ତମକୁ ଘରେ ଛାଡ଼ଦେବୁ । କିନ୍ତୁ ସେ ଆମ କଥା ନଶୁଣି ସିଧା ଡ଼ାମଲେଙ୍କ ସାଙ୍ଗରେ ଚାଲି ଗଲେ ।

ସୁଖାମ୍ବେ : (ଓକିଲ ଢ଼ଙ୍ଗରେ) peculiar.

ମିସେସ୍ କାଶୀକର: ଏଇ କିଛି ସମୟ ତଳେ ସେ ପାଠିକରୁଥିଲେ ଏବୁ ମିଛ କଥା । କିନ୍ତୁ ଏବେ ସେ କିପରି ଚୁପ୍ ରହିଛନ୍ତି ? ତାର ଅର୍ଥ .କଅଣ ? ସମସ୍ତେ ବେଶ ଅନୁମାନ କରି ପାରିବେ; ସତକଥା ନିଶ୍ଚୟ ପ୍ରକାଶ ପାଇବ । ହଉ ମୋତେ ମୋ ଉଲ୍ ଦିଅନ୍ତୁ । (ସୁଖାମ୍ବେଠାରୁ ଉଲ୍ ନେବା)

ସୁଖାମ୍ବେ : (ଉଲ ଓ କଣ୍ଟା ପ୍ରଭୃତି ତାଙ୍କୁ ଫେରାଇ) ମିସେସ୍ କାଶୀକର, ପ୍ରଫେସର ଡ଼ାମଲେ ଗୃହସ୍ଥ ଲୋକ, ତାଙ୍କର ପରିବାର ଅଛନ୍ତି—

ମିସେସ୍ କାଶୀକର : ହଁ, ତାଙ୍କର ପାଞ୍ଚୋଟି ଛୁଆ—

ସୁଖାମ୍ବେ : ତାହେଲେ ଆପଣ କାହିଁକି ନ କହିବେ ଯେ ମିସ୍ ବେଣାରେ ତାଙ୍କୁ ଜଣେ ଦାୟିତ୍ୱ ସଂପନ୍ନ ମୁରବୀଲୋକ ଭାବେ ସାଙ୍ଗରେ ଘରକୁ ନେଇ ଯିବାକୁ କହିଥିଲେ

ମିସେସ୍ କାଶୀକର : ତାହେଲେ ଆପଣ କହିବାକୁ ଚାହାନ୍ତି ଯେ ମୁଁ ଆଉ ମୋ ସ୍ୱାମୀ ଦାୟିତ୍ୱ ସଂପନ୍ନ ଲୋକ ନୋହୁଁ ? ଡ଼ାମଲେ ହୁଏତ ଜଣେ ବୟସ୍କ ଲୋକ, କିନ୍ତୁ ଆମର ବାଲୁ ତ ନୁହେଁ ।

ସୁଖାମ୍ବେ : ବାଲୁ—ମାନେ ରୋକଡ଼େ, କଥା କଅଣ ?

[ବେଣାରେ ଉତ୍ତେଜିତା ଜଣାପଡୁଥିବା]

ମିସେସ୍ କାଶୀକର : ମୁଁ କହୁଛି । ଆଉଦିନେ ତାଙ୍କ ପ୍ରୋଗ୍ରାମପରେ ବେଣାରେ ଆମ ଏ ବାଲୁ ସାଙ୍ଗରେ ଏକୁଟିଆ—ମୁଁ ବାଲୁ ମୁହଁରୁ ଶୁଣିଛି, କଅଣ ବାଲୁ, ସତ ନା ?

[କାର୍ଣ୍ଣିକ ଛଡା ଆଉ ସମସ୍ତଙ୍କ ମୁହଁରେ ଉତ୍ତେଜନା—ସୁଖାମ୍ବେ ବେଶ ଖୁସି ଜଣା ପଡୁଥାନ୍ତି]

ରେକଡ଼େ : (କମ୍ପିତ ଭାବେ) ହଁ ···ମାନେ···

ସାମନ୍ତ . (କର୍ଣ୍ଣିକ) ନାଁ, ନାଁ, ଏ କଥା ହୋଇ ନପାରେ । ମିସ୍ ବେଣାରେ ଏଠି କିଛି ସମୟ ଆଗରୁ ମୋ ସହିତ ଏକୁଟିଆ ଥିଲେ । ତା ବୋଲି—

[କର୍ଣ୍ଣିକ ତାଙ୍କୁ ଚୁପ କରାଇ ଦେବା]

ସୁଖାମ୍ରେ : ମିସେସ୍ କାଶୀକର, ଆପଣ ଏଥର ନିଜ ସ୍ଥାନକୁ ଯାଇ ପାରନ୍ତି । ଆପଣଙ୍କ ଠାରୁ ସାକ୍ଷ୍ୟ ଗ୍ରହଣ ସରିଲା । ମିଃ ଲର୍ଡ଼ ! ମୁଁ ନିବେଦନ କରୁଛି ଯେ ମିଷ୍ଟର ରୋକେଡ଼ଙ୍କୁ ପୁଣି ସାକ୍ଷୀ ବାକ୍ସକୁ ଡକାଯାଉ ।

(ରେକଡେ ନିଜ ସ୍ଥାନରୁ ନ ଉଠିବା । ସୁଖାମ୍ରେ ମିସ୍ ବେଣାରଙ୍କ ପାଖକୁ ଯାଇ ତାଙ୍କ ନିକଟରେ ଠିଆ ହେବା ଏବଂ ବନ୍ଧୁତ୍ୱପୂର୍ଣ୍ଣ ଭାବରେ) ମିସ୍ ବେଣାରେ, ଏ ଖେଳ ବେଶ୍ ଜମି ପାରୁଛି । ଆପଣ କଅଣ ଭାବୁଛନ୍ତି ?

ମିଷ୍ଟର କାଶୀକର : ରେକଡେ, ସାକ୍ଷୀ ବକ୍ସକୁ ଆସ ।

[ ରେକଡେ ବେଣାରଙ୍କ ଆଡେ ଚାହିଁବାକୁ ସାହସ ନ କରି ଡରି ଡରି ସାକ୍ଷୀ ବକସ୍କୁ ଆସିବା ]

ମିସେସ୍ କାଶୀକର : ବାଲୁ, ଡରିବୁ ନାହିଁ, ସତକଥା କହିବୁ ।

ସୁଖାମ୍ରେ : (ସାକ୍ଷୀ ବକସ୍ ପାଖକୁ ଯାଇ)

ମିଷ୍ଟର ରେକଡେ଼, ଆପଣ ଆଗରୁ ଶପଥ ନେଇ ସାରିଛନ୍ତି । ଆଚ୍ଛା ମିଷ୍ଟର ରେକଡେ଼, ମିସେସ୍ କାଶୀକର ତାଙ୍କ ସାକ୍ଷ୍ୟ ବେଳେ ଆପଣଙ୍କ ସମ୍ପର୍କରେ ଏକ ଅତି ଗୁରୁତ୍ୱପୂର୍ଣ୍ଣ କଥା କହିଛନ୍ତି ।

[ରେକଡେ଼ ମୁଣ୍ଡ ହଲାଇବା]

ମିସେସ୍ କାଶୀକର : ବାଲୁ, ମତେ କହି ନ ଥିଲୁ ?

ସୁଖାମ୍ନେ : ମିଷ୍ଟର ବୋକଡ଼େ, ସେଦିନ ପ୍ରୋଗ୍ରାମ ପରେ ଯାହା ଘଟିଲା, ଭଲ ବା ଅସାର, ସୁଖକର ବା ଅସୁଖକର, ସବୁ ଅଦାଲତ ଆଗରେ ଖୋଲି କହନ୍ତୁ । ଏହା ଆପଣଙ୍କ କର୍ତ୍ତବ୍ୟ । ପ୍ରୋଗ୍ରାମ ସରିଲା ପରେ କଅଣ ହେଲା ?

ବୋକଡ଼େ : (ଥତମତ ହୋଇ ) ମୁଁ···

ସୁଖାମ୍ନେ : ପ୍ରୋଗ୍ରାମ ସରିଲା ପରେ ଆମେ ସମସ୍ତେ ତ ବାହାରକୁ ଆସିଲେ, ତା ପରେ—

କାର୍ତ୍ତିକ : ଏଇ ଦୁଇଜଣ ମାତ୍ର ହଲରେ ରହିଗଲେ ।

ମିସେସ୍ କାଶୀକର : ମୁଁ ଯାହା ଶୁଣିଛି, ତା'ପରେ ମିସ୍ ବେଣାରେ ତାର, ମାନେ ବାଲୁର ହାତ ହଠାତ୍ ଧରିପକାଇ···

ପୋଙ୍କେ : ଗୁଡ୍ ।

ସୁଖାମ୍ନେ : ତା'ପରେ ? ତାପରେ ? ସେ ଆଉ କଣ କଲେ ବୋକଡ଼େ ? ଆଉ କଅଣ ?

ମିସେସ୍ କାଶୀକର : ମୁଁ କହୁଛି ।

ମିଷ୍ଟର କାଶୀକର : ନାଁ, ତମେ କହି କହିପାରିବ ନାହିଁ । ମଝିରେ ବାଧା ଦିଅ ନାହିଁ । ଯାହା କହିବା କଥା ବୋକଡ଼େ କହିବ ।

ସୁଖାମ୍ନେ : Yes ମିଷ୍ଟର ବୋକଡ଼େ, ଡ଼ରନ୍ତୁ ନାହିଁ । ସାହସର ସହିତ କୁହନ୍ତୁ ।

ମିଷ୍ଟର କାଶୀକର : ଡ଼ର ? ଆମେ ସବୁ ଏଠି ଥିଲାବେଳେ ଡ଼ର କାହାକୁ ? ଏଠି ତ ଡ଼କ୍ଟେଟରସିପ୍ ନାହିଁ, ଡ଼ର କଅଣ ?

[ବୋକଡ଼େ ଷ୍ଟୁଲଆଡ଼କୁ ଗୁହିଁ ସାହସ ସଞ୍ଚୟ କରିବା]

ବୋକଡ଼େ : (ସାହସ ସହ) ସେ ମୋ ହାତଧରି ପକାଇଲେ ।

ସୁଖାମ୍ନେ : ତା' ପରେ ?

ରେକଡ଼େ : ତାପରେ—ତାପରେ, ମୁଁ କହିଲି ଦେଖନ୍ତୁ ମିସ୍ ବେଣାରେ, ଏଇଟା ଠିକ୍ ନୁହେଁ । ଏସବୁ ଭଲକଥା ହେଉନାହିଁ । ତମ ପକ୍ଷରେ ଏ ଆଚରଣ ଉପଯୁକ୍ତ ନୁହେଁ । ଏକଥା ମୁଁ କହିଲି ।

ସୁଖାମ୍ନେ : ତାପରେ ?

ରେକଡ଼େ : ମୁଁ ମୋ ହାତ ଛଡ଼ାଇ ନେଲି । ସେ ଟିକିଏ ଘାବ୍ଧିଗଲେ । ସେଇଠୁ କହିଲେ—ଯାହା ଘଟିଗଲା, କାହାକୁ କିଛି କହିବ ନାହିଁ ।

ବେଣାରେ : (ଚିତ୍କାର କରି) ଏସବୁ ମିଛ କଥା ।

ମିଷ୍ଟର କାଶୀକର : (ଟେବୁଲ ବାଡେଇ) ଅର୍ଡର ଅର୍ଡର ! ଆସାମୀ ଗୋଳମାଳ କରୁଥିବାରୁ, ମୁଁ ପୁଣି କଡ଼ା ତାଗିଦ୍ କରି ଦେଉଛି । ରେକଡେ, କହିଚାଲ ।

ରେକଡ଼େ : ସେ ମତେ କହିଲେ, ତମେ ଯଦି ଏ କଥା କାହାକୁ କୁହ ତାହାଲେ ମୁଁ ତମକୁ ଦେଖିନେବି ।

ସୁଖାମ୍ନେ : ଏସବୁ କେବେ ଘଟିଲା ?

ରେକଡ଼େ : ଆଠଦିନ ତଳେ, ଡମ୍ମି ଭିଲଠାରେ । ଆମ ସୋ ହେଉଥିବା ସମୟରେ ।

ସୁଖାମ୍ନେ : ମି. ଲର୍ଡ, ଏହି ଆସାମୀ—ତାଙ୍କଠାରୁ ବୟସରେ ବହୁତ ଛୋଟ, ତାଙ୍କ ସାନଭାଇ ସମାନ ଗୋଟାଏ ବାଳକକୁ ଏକୁଟିଆ ପାଇ, ତା' ଉପରେ ଜୋର ଜୁଲମ କରିବାକୁ ଚେଷ୍ଟା କରିଥିଲେ । ଖାଲି ସେତିକି ନୁହେଁ, ଆହୁରି ମଧ୍ୟ ସ୍ପଷ୍ଟ ଜଣା ପଡୁଛି ଯେ, ଏକଥା କାହାକୁ କହିଦେଲେ, ସେଥିର ପରିଣତି ଭଲ ହେବ ନାହିଁ ବୋଲି ମଧ୍ୟ ସେ ତା'କୁ ଧମକ ଦେଇଥିଲେ । ଏହାଦ୍ୱାରା ସେ ନିଜ ପାପ ଘୋଡ଼ାଇବାକୁ ଚେଷ୍ଟା କରିଥିଲେ ।

ମିସେସ୍ କାଶୀକର : କିନ୍ତୁ ସତକଥା ଲୁଚି ରହି ପାରିବ ନାହିଁ ।

ସୂଖାମ୍ରେ : ତା'ହେଲେ ମିଷ୍ଟର ବେ୍ରକଡେ, ଆସାମୀ ଆପଣଙ୍କୁ ଧମକ ଦେଲେ ? ତା'ପରେ କଅଣ ହେଲା ?

ବ୍ରେକଡେ : (ନିଜ ଅଜାଣତରେ ନିଜର ଏକ ହାତ ଗାଲ ପାଖକୁ ନେଇ) ତା'ପରେ ମୁଁ, ମୁଁ ତାଙ୍କୁ ଗୋଟାଏ ଗୁମ୍ପୁଡ଼ା ଦେଲି ।

ପୋଙ୍ଗେ : What ?

କାର୍ତ୍ତିକ : ବେଶ୍ ମେଲୋ ଡ୍ରାମାଟିକ୍ ।

ବ୍ରେକଡେ : ହଁ, ଗୁମ୍ପୁଡ଼ା ଦେଇ ପଳେଇଲି, ମୋତେ କଅଣ ବୋଲି ଭାବୁଛ କି ? ମୁଁ କେବେହେଲେ ଚୁପ୍ ରହିବ ନାହିଁ । ସେଇଥି ପାଇଁ ତ ମୁଁ ପରେ ମିସେସ୍ କାଶୀକରଙ୍କୁ ସବୁ କହିଦେଲି । ହଁ, ସେଇଥି ପାଇଁ ।

ମିଷ୍ଟର କାଶୀକର : ବାଃ ! ବ୍ରେକଡେ, ତୁ ତାଙ୍କୁ ସବୁ କହିଲୁ ,ଅଥଚ ମୋତେ କିଛି କହିଲୁ ନାହିଁ ।

ବ୍ରେକଡେ : (ଅସ୍ପଷ୍ଟଭାବେ) ମୁଁ ଭୁଲ କରିଦେଲି ସାର୍ । ଆପଣଙ୍କୁ ନ କହିବା ଉଚିତ ହୋଇନାହିଁ ; କିନ୍ତୁ ମୁଁ ଭାବିଲି— ଭାବିଲି—ଯେତେହେଲେ ତ କଥାଟା ଆପଣଙ୍କ କାନକୁ ଯିବ, ମାନେ ମାଆ ତ ନିଶ୍ଚୟ କହିବେ । ତେଣୁ ମୁଁ—

ସୁଖାମ୍ରେ : ତା'ପରେ କଅଣ ହେଲା ? ତା'ପରେ ?

ବ୍ରେକଡେ : ତା'ପରେ—ତା'ପରେ ଆଉ କିଛି ନାହିଁ । ଏଥର ମୁଁ ଯାଇପାରେ ?

ସୁଖାମ୍ରେ : ହଉ—

[ସୁଖାମ୍ରେ ନିଜ ପକେଟରୁ ଖଣ୍ଡେ କାଗଜ ବାହାରକରି ଗୁଣୁଗୁଣୁ ହୋଇ ସେଥିରେ ଲେଖିବା, "ଆଠଦିନ ତଳେ, ଉମ୍ବି ଭିଲା ଠାରେ ସୋ' ବେଲେ" —ବ୍ରେକଡେ ତରତର ହୋଇ ସାକ୍ଷୀବକ୍ସରୁ ଓହ୍ଲାଇ ଯିବା ଏବଂ ମୁହଁରୁ ଝାଳ ପୋଛି ଟିକଏ

ଦୂରରେ ଠିଆହେବା—ସେ ବେଶ୍ ଶାନ୍ତ
ଓ ସନ୍ତୁଷ୍ଟ ଜଣା ପଡ଼ୁଥାନ୍ତି]

ମିସେସ୍ କାଶୀକର : କାଲି ବାଲି, ଭୂତ ମନ୍ତ୍ର ଏ ଶେଷ କଥାଟି କହି ନାହିଁ ।
ତାଙ୍କୁ ଝୁପୁଡ଼ା ମାରିବା କଥା !

[ସମସ୍ତଙ୍କ ମଧ୍ୟରେ ଉତ୍ତେଜନା]

ପୋଙ୍ଗେ : (ନିଜ ଆସନରୁ ଜୋରରେ ଧାଇଁପ ଉଠି)

ସୁଖାତ୍ମେ, ଏଥର ମୋ ସାକ୍ଷ୍ୟ । ମତେ ସାକ୍ଷୀ ବକସ୍‌କୁ ଡ଼ାକନ୍ତୁ । ଅଳ୍ପ ସମୟ ପାଇଁ ହେଲେ ମଧ୍ୟ ଡ଼ାକନ୍ତୁ ।

(ସେ ବେଣାରେ ଆଡ଼କୁ ଚାହିଁଥାଏ । ଅଧୀର କଣ୍ଠରେ କହୁଥାଏ)ମତେ ଡାକନ୍ତୁ···

ମିଷ୍ଟର କାଶୀକର : ସୁଖାତ୍ମେ, ପୋଙ୍ଗେଙ୍କୁ ଡାକନ୍ତୁ । ତାଙ୍କର କଅଣ କହିବାର ଅଛି ଶୁଣାଯାଉ । ଡାକନ୍ତୁ ବର୍ତ୍ତମାନ ।

ସୁଖାତ୍ମେ : ଆମର ପରବର୍ତ୍ତୀ ସାକ୍ଷୀ ମିଷ୍ଟର ପୋଙ୍ଗେ ।

[ପୋଙ୍ଗେ ସାକ୍ଷୀ ବକ୍ସକୁ ଯିବା]

ପୋଙ୍ଗେ : ମୁଁ ପୁଣି ଶପଥ ନେବା ଦରକାର ? ମୁଁ ଡ଼ିକ୍‌ସିନାରୀ ଉପରେ ହାତ ରଖି ଶପଥ କରୁଛି ଯେ—

ମିଷ୍ଟର କାଶୀକର . ହଉ ସୁଖାତ୍ମେ, ଜେରା କରନ୍ତୁ ।

ସୁଖାତ୍ମେ : ମିଷ୍ଟର ପୋଙ୍ଗେ, ଆସାମୀ ମିସ୍ ବେଣାରେ···

ପୋଙ୍ଗେ : (ବେଣାରେଙ୍କୁ ଚାହିଁ ) ତାଙ୍କ ବିଷୟରେ ମୋର ଗୋଟିଏ ବଡ଼ ଗୁରୁତ୍ୱପୂର୍ଣ୍ଣ କଥା କହିବାର ଅଛି ।

[ବେଣାରେ ଉଦ୍‌ବିଗ୍ନ ହୋଇ ପଡ଼ିବା]

ଆଚ୍ଛା ତାଙ୍କୁ ପଚାରନ୍ତୁ—ସେ ତାଙ୍କ ବ୍ୟାଗରେ ଟିକ୍ ଟ୍ୱେଣ୍ଟିର ଗୋଟାଏ ଶିଶି କାହିଁକି ରଖିଛନ୍ତି ?

[ବେଣାରେ ଆତଙ୍କରେ ଥରିଉଠିବା]

ମିସେସ୍ କାଶୀକର : ଏଁ କଅଣ କହିଲେ ?

ପୋଙ୍ଗେ : ଟିକ୍‌ଟ୍ରେଣ୍ଟି, ଓଜନ ମାରିବାପାଇଁ ଏକ ଶକ୍ତିଶାଳୀ ବଟିକା । ବଡ଼ ପ୍ରସିଦ୍ଧ ଔଷଧ ।

ସାମନ୍ତ : (କାର୍ତ୍ତିକଙ୍କୁ) ସେ ବୋଧହୁଏ ଓଜନ ମାରିବା ପାଇଁ…

ସୁଖାମ୍ନେ : ଆଚ୍ଛା ମିଷ୍ଟର ପୋଙ୍ଗେ, ଆପଣ ଆମକୁ କହି ପାରିବେ, ଆସାମୀ ଏ ବଟିକା ଶିଶି ତାଙ୍କ ପର୍ସରେ ଧରିଥିବା ଆପଣ କେବେ ଜାଣିଲେ ?

ପୋଙ୍ଗେ : ହଁ, କହିପାରିବି । ତାଙ୍କର ଜଣେ ଛାତ୍ରୀ ଆମ ସାହିରେ ରହେ । ପ୍ରାୟ ଦଶଦିନ ତଳେ, ସେ ମୋ ପାଖକୁ ଆସି କହିଲା, "ଆମ Teacher ତମ ପାଖକୁ ଏହା ପଠାଇଛନ୍ତି ।

ମିଷ୍ଟର କାର୍ଣୀକର : ଟିକ୍‌ଟ୍ରେଣ୍ଟି ?

ପୋଙ୍ଗେ : ନାଁ, ଗୋଟାଏ ଏନ୍‌ଭେଲପ୍, ସିଲ୍ ମୋହର ଦିଆ । ମୁଁ ଏନ୍‌ଭେଲପ୍ ଖୋଲିଲି, ତା ଭିତରେ ଆଉ ଏକ ଏନ୍‌ଭେଲପ ଥିଲା । ତା ମଧ୍ୟ ସିଲ ହୋଇଥିଲା । ସେଥିରେ ଲେଖାଥିଲା—"ମୋ ସାଙ୍ଗରେ ଦେଖାକରି ପାରିବେ କି ? ଆପଣଙ୍କ ସହିତ ମୋର ଗୋଟିଏ କଥା ଆଲୋଚନା କରିବାର ରହିଛି । ଗୋଟାଏ ପନ୍ଦର ମିନିଟ୍ ବେଳକୁ ସ୍କୁଲ ପାଖରେ ଥିବା ରେସ୍ତୁରାଁକୁ ଆସିବେ ।" ମତେ ଅବଶ୍ୟ ଏଗୁଡ଼ାକ ଭଲ ଲାଗୁ ନଥିଲା । କିନ୍ତୁ ପରେ ଭାବିଲି, ଦେଖେଁ, ତାଙ୍କର ଖେଳ କଅଣ । ସେଥିପାଇଁ ଖାଲି ମଜା ଜାଣିବାକୁ ମୁଁ ସେଠାକୁ ଗଲି । ମୁଁ ପହଞ୍ଚିବାର ୫ ମିନିଟ ପରେ ମିସ୍ ବେଣାରେ ଆସି ପହଞ୍ଚିଲେ । ସେ ବଡ଼ ଉଦ୍‌ବିଗ୍ନ ଓ ବ୍ୟସ୍ତ ଜଣା ପଡ଼ୁଥାନ୍ତି ।

[ବେଣାରେ ଉଦ୍‌ବିଗ୍ନ ହୋଇ ଉଠିବା]

ସୁଖାମ୍ନେ : ଆଇ ସି ।

ମିଷ୍ଟର କାର୍ଣୀକର : ତାପରେ ? ତାପରେ କଅଣ ହେଲା ପୋଙ୍ଗେ !

ପୋଙ୍ଗେ : ତାପରେ ମତେ ସେ କହିଲେ, "ଏଠି ନୁହେଁ, ଏଠି ଆମକୁ କେହି ଦେଖିବ । ଚାଲନ୍ତୁ ଗୋଟିଏ ଫ୍ୟାମିଲି କ୍ୟାବିନ୍‌ରେ ବସି କଥାବର୍ତ୍ତା କରିବା ।"

ମିସେସ୍ କାଶୀକର : (ବ୍ୟଙ୍ଗକରି) ବାଃ ଚମତ୍କାର ।

ପୋଙ୍ଗେ : ତାପରେ ଆମେ ଗୋଟିଏ ଫ୍ୟାମିଲି କ୍ୟାବିନ୍‌କୁ ଗଲୁ । ସେଠି ଚା' ମଗାଇଲୁ । ତାଙ୍କର ସମସ୍ୟା ସମ୍ପର୍କରେ କଥାବାର୍ତ୍ତା ସାରିବା ପରେ, ସେ ତାଙ୍କ ରୁମାଲ ବାହାର କରିବା ପାଇଁ ପର୍ସ ଖୋଲିଲେ । ସେତେବେଳେ ତାଙ୍କ ପର୍ସ ଭିତରୁ ଗୋଟିଏ ଛୋଟ ଶିଶି ତଳକୁ ପଡ଼ିଗଲା ।

[କିଛି ସମୟ ନୀରବତା]

ସୁଖାତ୍ମେ : ଆଉ ସେଇଟା ଟିକ୍‌ଟ୍ୱେଣ୍ଟିର ଶିଶି । ବେଶ୍ ! କିନ୍ତୁ ମିଷ୍ଟର ପୋଙ୍ଗେ, ତା ପୂର୍ବରୁ ଆପଣ ଆଉ ମିସ୍ ବେଣାରେଙ୍କ ଭିତରେ କଅଣ ସବୁ କଥାବାର୍ତ୍ତା ହୋଇଥିଲା । ମାନେ, ସେ କି ସମସ୍ୟା ନେଇ ଆପଣଙ୍କ ସହିତ ଆଲୋଚନା କରିଥିଲେ, ତା'ତ, ଆପଣ ଆମକୁ କହିଲେ ନାହିଁ ।

[ବେଣାରେ ଜୋରରେ ମୁଣ୍ଡହଲାଇ କିଛି ନ କହିବା ପାଇଁ ପୋଙ୍ଗେଙ୍କୁ ଇଙ୍ଗିତ ଦେଉଥାନ୍ତି]

ପୋଙ୍ଗେ : ସେ—ସେ ମୋତେ ବିବାହ କରିବା ପାଇଁ ଇଚ୍ଛା ଜଣାଇଲେ ।

କାର୍ତ୍ତିକ ଓ ମିସେସ୍ କାଶୀକର } ହ୍ୱାଟ୍ ?

[ରୋକଡ଼େ ଓ ଅନ୍ୟମାନେ ସ୍ତମ୍ଭିତ]

ମିଷ୍ଟର କାଶୀକର : ଏ ତ ବେଶ ଇଣ୍ଟରେଷ୍ଟିଂ ହୋଇ ଉଠିଛି ସୁଖାତ୍ମେ ?

ସୁଖାତ୍ମେ : ଟ୍ରୁ ମି. ଲର୍ଡ଼ ! ଇଟ୍ ଇଜ୍ ଆଣ୍ଡ ଇଟ୍ ୱିଲ୍ ବି ।

[ବେଣାରେଙ୍କୁ ଓକିଲ ଢଙ୍ଗରେ ଚାହିଁ]

ଅଚ୍ଛା ମିଷ୍ଟର ପୋଙ୍ଗେ, ସେ କଅଣ ଆପଣଙ୍କୁ ପ୍ରେମ କରନ୍ତି, ଭଲ ପାଆନ୍ତି । ଏମିତି କିଛି କହିଲେ ?

ପୋଙ୍ଗେ : ନାଁ, ସେ କିନ୍ତୁ ମତେ ଜଣାଇଲେ ଯେ, ତାଙ୍କ ଗର୍ଭରେ ସନ୍ତାନ ।

[ସମସ୍ତଙ୍କ ମଧ୍ୟରେ ଚାଞ୍ଚଲ୍ୟ । ବେଣାରେ ପଥରଖଣ୍ଡେ ପରି ବସି ରହିଥାନ୍ତି । ତାଙ୍କ ମୁହଁ କଳା ପଡ଼ି ଯାଇଥାଏ । ସେ ଅତ୍ୟନ୍ତ ବିମର୍ଷ ]

କାର୍ତ୍ତିକ : ପୋଙ୍ଗେ, ଏକଥା କଅଣ ସତ ?

ପୋଙ୍ଗେ : ଆପଣ କଣ ଭାବୁଚନ୍ତି, ମୁଁ ମିଛ କହୁଛି ?

ମିଷ୍ଟର କାଣୀକର : ସନ୍ତାନର ବାପା କିଏ ? କହିଦିଅ, କହିଦିଅ ପୋଙ୍ଗେ, ବନ୍ଦ କରନାହିଁ ।

ସୁଖାତ୍ମେ : ମିଷ୍ଟର ପୋଙ୍ଗେ !

ପୋଙ୍ଗେ : କିଏ ତାଙ୍କୁ ଏ ଦଶାରେ ପକାଇଲା, ତାହା କାହାକୁ ନ କହିବା ପାଇଁ ସେ ମୋଠୁଁ ଶପଥ କରାଇ ନେଇଛନ୍ତି । ଏ ପର୍ଯ୍ୟନ୍ତ ମୁଁ ମୋ ଶପଥ ଅକ୍ଷରେ ଅକ୍ଷରେ ରକ୍ଷାକରି ଆସିଛି ।

ମିସେସ୍ କାଣୀକର : କିନ୍ତୁ ସେ କିଏ ?

ମିଷ୍ଟର କାଣୀକର : ତମେ ଚୁପ୍‌କର, ସେକଥା ଆପେ ଆପେ ପ୍ରକାଶ ପାଇବ । ଅଧୈର୍ଯ୍ୟ ହୁଅ ନାହିଁ । କିନ୍ତୁ ମୁଁ ବୁଝିପାରୁନାହିଁ ମାଆ ପୋଙ୍ଗେ, ମିସ୍ ବେଣାରେ ଜଣେ ଲୋକଙ୍କ ସନ୍ତାନର ହୋଇ ଆଉ ଜଣଙ୍କୁ, ମାନେ ତମକୁ ବାହା ହେବାକୁ ଚାହିଁଲେ ?

ପୋଙ୍ଗେ : Exactly ।

ସୁଖାମ୍ପେ : ଆଚ୍ଛା, ଆପଣ କଅଣ ଉତ୍ତର ଦେଲେ ମିଷ୍ଟର ପୋଙ୍ଗେ ? ଆପଣ କଅଣ ମାନବକତା ଦୃଷ୍ଟିରୁ ଉଦାର ଦୃଷ୍ଟିଭଙ୍ଗୀ ନେଇ ତାଙ୍କୁ ଗ୍ରହଣ କରିବାକୁ ପ୍ରସ୍ତୁତ ହୋଇଗଲେ ?

ପୋଙ୍ଗେ : ଏଥିର ଉତ୍ତର ସ୍ପଷ୍ଟ ।

ସୁଖାମ୍ପେ :ଅର୍ଥାତ୍ ଆପଣ ରାଜି ହେଲେ ନାହିଁ ?

ପୋଙ୍ଗେ :ସେ କଥା ଠିକ୍ ।

ସୁଖାମ୍ପେ : ଏବଂ ଏହାପରେ ମିଷ୍ଟର ପୋଙ୍ଗେ, ସେ ଟିକ୍‌ଟେଣ୍ଟି ଶିଶି ତାଙ୍କ ପର୍ସରୁ ଗଡ଼ିଗଲା ?

ପୋଙ୍ଗେ :ହିଁ, ମୁଁ ତାହା ତଳୁ ଗୋଟାଇ ତାଙ୍କୁ ଫେରାଇଦେଲି । ଆଚ୍ଛା, ତାଙ୍କ ଓ ମୋ ମଧ୍ୟରେ ଯାହା କଥାବାର୍ତ୍ତା ହେଲା, ସେ ସବୁ ମୁଁ ଏଠି କହିବି ? ଆପଣମାନେ ଚାହିଁଲେ ମୁଁ କହିବାକୁ ପ୍ରସ୍ତୁତ ।

ବେଣାରେ : (ହଠାତ୍ ଉଠିପଡ଼ି) ନା—ନା—ନା—

ମିଷ୍ଟର କାର୍ଣୀକର : (ଟେବୁଲ ବାଡେଇ) ସାଇଲେନ୍‌ସ । ପୋଙ୍ଗେ ଆମକୁ ସବୁ କଥାବାର୍ତ୍ତା କୁହ । (ସୁଖାମ୍ପେଙ୍କୁ) ବର୍ତ୍ତମାନ ଆମେ ସେ ସବୁ ଜାଣିବା ।

ବେଣାରେ : ନା, ନା, ପୋଙ୍ଗେ, ତମେ ଶପଥ କରିଥିଲ ।

ସୁଖାମ୍ପେ : ମିଷ୍ଟର ପୋଙ୍ଗେ, ତମ ଭିତରେ ଏମିତି କଅଣ କଥାବାର୍ତ୍ତା ହେଲା ଯେ, ମିସ୍ ବେଣାରେ ଏତେ ବ୍ୟସ୍ତ ହେଇ ପଡ଼ୁଛନ୍ତି ?

ମିଷ୍ଟର କାର୍ଣୀକର : ହିଁ, କୁହ ପୋଙ୍ଗେ, ଡେରି କର ନାହିଁ, ଶୀଘ୍ର କୁହ । ତାହା ସମାଜ ପକ୍ଷରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

ପୋଙ୍ଗେ : ପ୍ରଥମେ ଆମେ ଏଣୁତେଣୁ କଥାବାର୍ତ୍ତା କଲୁ । ଯେମିତି ସେ କହିଲେ ଏଇ ସୁଖାମ୍ପେ ସମ୍ପର୍କରେ, "ସୁଖାମ୍ପେ ଜଣେ ଭଲ ଲୋକ । କିନ୍ତୁ ବିଚାରର ଭାଗ୍ୟଟା ଖରାପ ।

ତାଙ୍କ ପ୍ରାକ୍‌ଟିସ୍ ଭଲ ନୁହେଁ । ସେ କେବଳ ବାର ରୁମ୍‌ରେ ବସି ପେସେନ୍‌ସ ଖେଳନ୍ତି । ମକ୍କେଲମାନେ କହନ୍ତି ଯେ ତାଙ୍କ ହାତକୁ କେସ ଗଲେ ମାମଲା ଖତମ, ଜେଲ ସୁନିଶ୍ଚିତ । ସେ ଅଦାଲତରେ ମୁହଁ ଖୋଲି ପାରନ୍ତି ନାହିଁ ।"

ସୁଖାତ୍ମେ : (କ୍ରୋଧ ଗୁପିରଖି) ଆଇ.ସି. । ୟେସ୍ ଗୋ ଅନ୍—

ପୋଙ୍କେ : "କାଶୀକର, ଏ ବିଚରା ରୋକଡ଼େଙ୍କୁ ବଡ଼ ହଇରାଣ କରୁଛନ୍ତି—କାହିଁକି ନା ସେ ବରାବର ସନ୍ଦେହ କରନ୍ତି ଯେ, ମିସେସ୍ କାଶୀକରଙ୍କ ସହିତ ତାର କିଛି ସମ୍ପର୍କ ରହିଛି । ତାଙ୍କର ପିଲାପିଲି ନାହାନ୍ତି ତ, ସେଇଥିପାଇଁ···

ମିସେସ୍ କାଶୀକର୍ : ଏକଥା—ମିସ୍ ବେଣାରେ ତମକୁ କହିଲେ ?

[ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ ମିସ୍ ବେଣାରଙ୍କୁ ଗୁହିଁବା]

ମିଷ୍ଟର କାଶୀକର : (ଜୋରରେ କାନ କୁଣ୍ଡେଇ) ଗୋ ଅନ୍—ତାପରେ କହିଗୁଲ ପୋଙ୍କେ—

ପୋଙ୍କେ : କିନ୍ତୁ ମିସ୍ ବେଣାରେ ବରଦାସ୍ତ କରିବେ ନାହିଁ ।

ମିଷ୍ଟର କାଶୀକର : (ଟେବୁଲ ବାଡ଼େଇ) ଏଠି ବସ୍ଥିରପତି କିଏ ପୋଙ୍କେ ? ମୁଁ ନା ତମେ ? ଆସାମୀ ବରଦାସ୍ତ କରିବେ କି ନ କରିବେ ସେ ପ୍ରଶ୍ନ କେବେ କେଉଁଠି ଅଦାଲତରେ ଉଠିଛି ? ମୁଁ କହୁଛି, କହି ଗୁଲ ।

ବେଣାରେ : (ପୋଙ୍କେ ପାଖକୁ ଆସି) ପୋଙ୍କେ---

ମିଷ୍ଟର କାଶୀକର : (ଟେବୁଲ ବାଡ଼େଇ) ଅର୍ଡ଼ର । ଆସାମୀ ନିଜ ସ୍ଥାନକୁ ଯାଆନ୍ତୁ । ରୋକଡ଼େ, ଆସାମୀକୁ ତାଙ୍କ ନିଜ ସ୍ଥାନକୁ ନେଇଯାଅ ।

[ରୋକଡ଼େ ଟିକିଏ ଆଗେଇ ଆସି ଅଟକି ଯିବା]

ବେଣାରେ : ପୋଙ୍ଗେ, ତମେ ଯାହା କହିବ, ତା'ହେଲେ ଦେଖିବ ।

ମିଷ୍ଟର କାଣୀକର : ଆସାମୀ ମିସ୍ ବେଣାରେ, ନିଜ ସ୍ଥାନକୁ ଯାଅ । ବ୍ରେକଡ୍ରେ, ତାଙ୍କ ହାତ ଧରି ନେଇଯାଅ ।

ମିସେସ କାଣୀକର : (ଆଗେଇ ଆସି ବେଣାରେଙ୍କ ହାତ ଧରି) ଚାଲ ନିଜ ସ୍ଥାନକୁ । ବ୍ରେକଡ୍ରେ, ଆଉ ଗୋଟାଏ ହାତଧର । (ବ୍ରେକଡ୍ରେ ଇତସ୍ତତଃ ହେବା) ବେଣାରେ ଚାଲ, ଚାଲ ସେ ପଟକୁ ।

[ସେ ବେଣାରେଙ୍କୁ ଟାଣି ଆସାମୀ ପାଇଁ ଥିବା ବକ୍ସକୁ ନେଇଯିବା ଏବଂ ସେ ଆଉ ବ୍ରେକଡ୍ରେ ବେଣାରଙ୍କୁ ଦୁଇପଟ୍ ଜଗି ରହିବା]

ମିଷ୍ଟର କାଣୀକର : ପୋଙ୍ଗେ, ତାପରେ ସବୁ କଅଣ କଥାବାର୍ତ୍ତା ହେଲ ?

ପୋଙ୍ଗେ : ଏମିତି ଏଣୁତେଣୁ କେତେକ କଥାବାର୍ତ୍ତା ପରେ ଆମେ ଅସଲ କଥାକୁ ଆସିଲୁ ।

କାର୍ତ୍ତିକ : ରହନ୍ତୁ, ରହନ୍ତୁ । ଆଚ୍ଛା ପୋଂଖେ, ସେ ମୋ ବିଷୟରେ କଅଣ କହିଲେ ?

ପୋଂଖେ : କିଛି ନାହିଁ ।

କାର୍ତ୍ତିକ : ସେ ନିଶ୍ଚୟ କିଛି କହିଥିବେ— କହିଥିବେ ଯେ, ମୁଁ ଜଣେ ବାଜେ ଆକ୍ଟର, ଏମିତି କିଛି । ମୁଁ ଜାଣେ, ମୋ ବିଷୟରେ ତାଙ୍କ ମତ କ'ଣ ? ମୁଁ ତାଙ୍କୁ ଭଲ ଭାବରେ ଚହ୍ନେ ।

ପୋଂଖେ : ସେ ଅସଲ କଥାକୁ ଆସି, ମତେ ପ୍ରଥମେ ପରିହାସକରି ପଚାରିଲେ, ଆଚ୍ଛା ପୋଂଖେ, ତମର ବାହାଘର କିଛି କେଉଁଠି ଠିକ୍ ହେଲାଣି ? ମୁଁ କହିଲି ଉପଯୁକ୍ତ ପାତ୍ରୀ ନ ମିଳିଲା ଯାଏ, ମୁଁ ବାହା ହେବନାହିଁ । ତା'ପରେ ସେ ପଚାରିଲେ, ଉପଯୁକ୍ତ ପାତ୍ରୀ ବୋଇଲେ ଠିକ୍ ତମେ କଅଣ ଭାବୁଛ ? କଅଣ ଚାହୁଁଛ ତମେ ? ମୁଁ କହିଲି

ଝିଅ ଗୁଡ଼ାକ ସାଧାରଣତ ନିର୍ବୁଦ୍ଧିଆ ବୋଲି ମୋର ଧାରଣା । ଆଇ ଓ୍ୱାଣ୍ଟ ଏ ମେଚ୍ୟୋର ପାର୍ଟନର୍ । ଜଣେ ପୋଖତ ବୁଦ୍ଧିସମ୍ପନ୍ନା ସ୍ତ୍ରୀ ମୋର ଦରକାର । ସେ କହିଲେ, ଆଚ୍ଛା ତମେ କଅଣ ଜାଣୁନାହିଁ ଯେ ପୋଖତ ବୁଦ୍ଧି—ଅର୍ଥାତ ସଂସାର ସମ୍ପର୍କରେ ଉତ୍ତମଜ୍ଞାନ ମଣିଷ ଅଭିଜ୍ଞତାରୁ ପାଇଥାଏ । ମୁଁ ଉତ୍ତର ଦେଲି, ମୁଁ ଜାଣି ନାହିଁ । ତାପରେ ସେ କହିଲେ ଯେ, ବୟସ ବଢ଼ିବା ସଙ୍ଗେ ସଙ୍ଗେ ଏବଂ କିଛି ଏକ ଅସ୍ୱାଭାବିକ ଜୀବନ ଯାତ୍ରା ଭିତରେ ହିଁ ଅଭିଜ୍ଞତା ଲାଭ ହୋଇଥାଏ । ଏ ପ୍ରକାର ଅଭିଜ୍ଞତା ସେମିତି ସୁଖକର ହୋଇନଥାଏ । ତାହା ମଣିଷକୁ ବ୍ୟଥା ଦିଏ । ଏବଂ ସାଧାରଣତଃ ତାହା ଅନ୍ୟମାନଙ୍କ ପକ୍ଷରେ ମଧ୍ୟ ଅସହ୍ୟ ହୋଇପଡ଼େ । କିନ୍ତୁ ତମେ କଅଣ ତାହା ସହ୍ୟକରି ପାରିବ ? ଧର ଜଣେ ପୋଖତ ନାରୀ ତମଠୁଁ ଅଧିକ ବୟସ୍କ ଆଉ ଅଧିକ ଶିକ୍ଷିତ ହୋଇଥିବେ । ତମେ ତାଙ୍କୁ ଗ୍ରହଣ କରିବ ? ମୁଁ କହିଲି, ମୁଁ ସେ କଥା ଗୁରୁତ୍ୱଦେଇ କିଛି ଭାବି ନାହିଁ । ସେମିତି କେହି ତମ ଦୃଷ୍ଟିରେ ଅଛନ୍ତି ନାଁ । କଣ ? ସେ କହିଲେ ହଁ, ମୁଁ ଭାବୁଛି ତମେ ଯାହା କୁହଁ, ସେ ସେହି ପ୍ରକାରର ଜଣେ ନାରୀ । କେବଳ ତାଙ୍କର ଗୋଟାଏ ଅସ୍ୱାଭାବିକ ଅବସ୍ଥାକୁ ତମକୁ ମାନି ନେବାକୁ ପଡ଼ିବ । ମୁଁ ପଚାରିଲି, କଅଣ ସେ ଅସ୍ୱାଭାବିକ ଅବସ୍ଥା ? ସେ କହିଲେ, ନିକଟରେ ସେ ପ୍ରେମଜନିତ ଗୋଟାଏ ବଡ଼ ଧକ୍କା ପାଇଛନ୍ତି । ଏବଂ—ରୁହନ୍ତୁ ମୁଁ ଟିକିଏ ମନେ ପକାଏ । ଠିକ୍ ସେ କହିଲେ — ହଁ, ସେ ପ୍ରେମର ଫଳ ତାଙ୍କ ଗର୍ଭରେ ସେ ଧାରଣ କରିଛନ୍ତି । ପ୍ରକୃତରେ ସେଇଟା ତାଙ୍କ ଦୋଷନୁହେଁ । କିନ୍ତୁ ତାଙ୍କ ଅବସ୍ଥା ବାସ୍ତବିକ୍ ବଡ଼ ଶୋଚନୀୟ । ସେ ସେହି ସନ୍ତାନକୁ

ପାଳନ ପୋଷଣ କରିବାକୁ ଚାହାନ୍ତି । ଅସଲରେ ସେହି କାରଣରୁ ହିଁ, ସେ ବଞ୍ଚିବାକୁ ଓ ବିବାହ କରିବାକୁ ଚାହାନ୍ତି । ମିସ୍ ବେଣାରେ ଏକଥା କହିଲେ ଯେତେବେଳେ ମୋ ମନରେ ଏକ ସନ୍ଦେହ ସୃଷ୍ଟି ହେଲା । ମୁଁ ତେଣୁ ସତକଥାଟା ତାଙ୍କଠାରୁ ଆଦାୟ କରିବାକୁ ଚାହିଁଲି । ମୁଁ ତେଣୁ କହିଲି, ଆହା ବିଚାରୀ ତାଙ୍କର ଭାଗ୍ୟ ବଡ଼ ମନ୍ଦ । କେଉଁ ବଦ୍ ମାସ୍ ତାଙ୍କୁ ଏ ଦଶାରେ ପକାଇଲା ।

ସୁଖାମ୍ନେ : ଏହାର ଉତ୍ତରରେ ସେ ଚମକି କହିଲେ ଯେ ସେ ଲୋକ ହେଉଛନ୍ତି ପ୍ରଫେସର ଡାମଲେ ।

ପୋଙ୍ଗେ : ନା । ସେ ପ୍ରଥମେ କହିଥିଲେ "ତାଙ୍କୁ ବଦମାସ୍ ବୋଲି କୁହନାହିଁ । ସେ ହୁଏତ ଜଣେ ଭଲଲୋକ, ହୁଏତ ଜଣେ ବିଦ୍ୱାନ ଓ ମହାନ ଲୋକ । ସମ୍ଭବତଃ ସେ ସ୍ତ୍ରୀ ଲୋକଟି ତାଙ୍କର ଉପଯୁକ୍ତ ନୁହେଁ । ସେ ସ୍ତ୍ରୀ ଲୋକଟି ବୋଧହୁଏ ତାଙ୍କୁ ବୁଝାଇ ପାରି ନାହାନ୍ତି, ତାଙ୍କ ପ୍ରତି ତାଙ୍କ ମନରେ କି ଗଭୀର ଅନୁରାଗ ରହିଛି । ଯାଉ, ସେ କଥା ଏଠି ବଡ଼ କଥା ନୁହେଁ, ସେ ଲୋକ ଅପେକ୍ଷା ବର୍ତ୍ତମାନ ମୁଖ୍ୟ ହେଉଛି ଏ ଝିଅଟି ।"

ସୁଖାମ୍ନେ ତାପରେ ?

ପୋଙ୍ଗେ : ତା'ପରେ ସେ କହିଲେ, ସେ ମହିଳା ସେ ଭଦ୍ରଲୋକଙ୍କ ବିଦ୍ୟା ଓ ଜ୍ଞାନର ପୂଜାରିଣୀ ଥିଲେ । କିନ୍ତୁ ସେ ଭଦ୍ରଲୋକ କେବଳ ତାଙ୍କ ଦେହଟିକୁ ହିଁ ଲୁଟିଲେ । ମିସ୍ ବେଣାରେ ଏହିପରି ଅନ୍ୟ କେତେକଥା କହି ଜଣାଇଲେ ଯେ, ସେ ପ୍ରଫେସର ଡାମଲେଙ୍କ ଜୀବନରେ ସ୍ଥାନ ପାଇ ପାରିଲେ ନାହିଁ ।

ସାମନ୍ତ }
କାର୍ତ୍ତିକ } — ଡାମଲେ ?
ସୁଖାମ୍ନେ }

ପୋଂଖେ : ସତକଥା କହିବାକୁ ଗଲେ ନାଁ ପ୍ରକାଶ କରିବନାହିଁ ବୋଲି ମୁଁ ଶପଥ ନେଇଛି—କିନ୍ତୁ···

ସୁଖାମେ : ସେଥିରେ କିଛି ଯାଏ ଆସେନାହିଁ । ମିଷ୍ଟର ପୋଂଖେ, ଅଜାଣତରେ ଶପଥ ଭାଙ୍ଗିଦେଲେ ତାହା ଦୋଷ ହେବ ନାହିଁ । ଅନ୍ତତଃ ଅଦାଲତରେ ନୁହେଁ । ତା'ହେଲେ ତମେ କହିବାକୁ ଚାହୁଁଛ ଯେ, ସେ ଗର୍ଭରେ ଯେଉଁ ସନ୍ତାନ ଧରିଛନ୍ତି—ତା' ପ୍ରଫେସର ଡ଼ାମଲେଙ୍କର ? ବେଶ୍, ତାପରେ କହିଚାଲ—କଅଣ ହେଲା ?

ପୋଂଖେ : ତାପରେ ସେ ମୋ ଗୋଡ଼ତଳେ ପଡ଼ିଗଲେ ।

ମିଷ୍ଟର କାଶୀକର : I see, I see

ପୋଂଖେ : ହଁ, ସେ ମୋ ଗୋଡ଼ତଳେ ପଡ଼ିଗଲେ । ମୁଁ କହିଲି ମିସ୍ ବେଣାରେ, ତମ ପକ୍ଷରେ ଏପରି ଆଚରଣ ଶୋଭନୀୟ ନୁହେଁ । ମତେ ତମେ ଏକଥା ପଚାରିବା ମୋ ପ୍ରତି ଏକ ଅପମାନ । ମତେ କଅଣ ଏତେ ଗ୍ରେଟଲୋକ ଭାବିଲ ? ମୋର ଏକଥା ଶୁଣି ସେ ହଠାତ୍ ଚଳି ଉଠି ପଡ଼ିଲେ, ଜୋରକରି ହସି ଉଠ କହିଲେ, ତମେ ଭାବୁଛ ମୁଁ ଯାହା କହିଲି ଏସବୁ ସତକଥା ? ମୁଁ ଖାଲି ମଜା କରୁଥିଲି । ତା'ପରେ ସେ ଜୋରରେ ହସି ଚାଲିଲେ—

ମିସେସ୍ କାଶୀକର . ଖାଲି ମଜାବୋଲି କହିଲେ ?

ପୋଂଖେ : କିନ୍ତୁ ସେତେବେଳେ ତାଙ୍କ ଆଖିରେ ଲୁହ ଭର୍ତ୍ତି । ସେଇଥିରୁ ସବୁ କଥା ମୋ ଆଗରେ ସ୍ପଷ୍ଟ ହୋଇଗଲା ତାପରେ ସେ ହଠାତ୍ ଡ଼େର ହୋଇଗଲା କହି ତରବର ହୋଇ ଚାଲିଗଲେ ।

ସୁଖାମେ : Thak you ମିଷ୍ଟର ପୋଂଖେ—ଆପଣ ଏ ମୂଲ୍ୟବାନ ଖବର ଯୋଗାଇ ଥିବାରୁ ଧନ୍ୟବାଦ ।

[ପୋଂଖେ ସାକ୍ଷୀ ବକ୍ସରୁ ଓହ୍ଲାଇ ଆସିବା—ସୁଖାମେ କାଗଜ ଟୁକୁରାଟିଏ

ପକେଟରୁ ବାହାରକର ମନେମନେ ଗୁଣୁ
ଗୁଣୁ ହୋଇ ଟିପିବା—"ଦଦୋନ ଡାଲ
—ରେକର୍ଡ ହାତ ଧରବାର ଦୁଇ
ଦନ ପୂର୍ବରୁ']

Thats fine ମି: ଲର୍ଡ । ଏସାକ୍ଷ୍ୟ ଉପରେ ଆଉ
ମନ୍ତବ୍ୟର ଆବଶ୍ୟକତା ନାହିଁ । ଏହା ଆପେ ଆପେ ହିଁ
କଥା ସ୍ପଷ୍ଟ କରଦେବ । ଆସାମୀ ପ୍ରଥମେ ପୋଂଖୋଙ୍କ
ଶରଣ ପଶିଥିଲେ । ସେଠି କଛୁ ଫଳ ହେବନାହିଁ ଜାଣି,
ପରେ ରେକର୍ଡରେ ଶରଣାପନ୍ନ ହେଲେ । ବେଶ୍ ଏଥର
ସାକ୍ଷୀ ହେବେ, ନଜେ ଆସାମୀ, ମି. ଲର୍ଡ !

[କହ୍ନ, ସେ ମିସ୍ ବେଣାରେଙ୍କ ଅଡ଼କୁ
ହାତ ଦେଖାଇବା — ମିସ୍ ବେଣାରେ
ଅର୍ଦ୍ଧମୃତ ଅବସ୍ଥାରେ ବସିଥାନ୍ତି]

କାର୍ତ୍ତିକ : (ନାଟକୀୟ ଭଙ୍ଗୀରେ ହାତଟେକ) ରହନ୍ତୁ, ରହନ୍ତୁ, ଏ
କେଶ ସମ୍ପର୍କରେ ମୋର କେତେକ ଗୁରୁତ୍ୱପୂର୍ଣ୍ଣ କଥା
କହିବାର ଅଛି ।

ସ୍ମୁଷାଟେମ୍ନ : ମିଷ୍ଟର କାର୍ତ୍ତିକ, ସାକ୍ଷୀବକ୍ସକୁ ଆସନ୍ତୁ ।

[କାର୍ତ୍ତିକ ନାଟକୀୟ ଭଙ୍ଗୀରେ ସକ୍ଷୀ
ବକ୍ସକୁ ଯିବା । ମି. କାଶୀକର
ଜୋରରେ କାନ କୁଣ୍ଡାଇ ହେବା ]

କୁହନ୍ତୁ ମିଷ୍ଟର କାର୍ତ୍ତିକ, ଆପଣ କଅଣ ଜଣାଇବାକୁ
ଚାହାନ୍ତି ।

କାର୍ତ୍ତିକ : ରେକର୍ଡ଼ ଏଠାରେ ଆସାମୀ ମିସ୍ ବେଣାରେ ଓ ନଜ
ସମ୍ପର୍କରେ ଯେଉଁ ସାକ୍ଷ୍ୟ ଦେଇଛନ୍ତି ତାହା ଠିକ୍
ନୁହେଁ ।

ରେକର୍ଡ : (ଓକିଲସ୍ୱରରେ) ଆପଣଙ୍କର ସେଥିରେ କଅଣ ଅଛି ?

କାର୍ତ୍ତିକ : (ନାଟକୀୟ ଭଙ୍ଗୀରେ) କାରଣ ସେ ସମୟରେ କଅଣ ସବୁ କୁହାଯାଇଥିଲ ଓ କଅଣ ଘଟିଥିଲ, ଦୈବାତ ମୁଁ ସେଥିର ଜଣେ ପ୍ରତ୍ୟକ୍ଷ ସାକ୍ଷୀଥିଲି ।

ମିଷ୍ଟର କାଣୀକର : (ଇସ୍ପୁର ଷ୍ଟିକ୍ ସଫାକରି) କଅଣ କଅଣ ? ବିଷୟଟିକୁ ଜଟିଳ ନକରି ଆପଣଙ୍କର ବକ୍ତବ୍ୟ ପ୍ରକାଶ କରନ୍ତୁ ।।

କାର୍ତ୍ତିକ : (ନାଟକୀୟ ଘଣ୍ଟରେ) ମୋ ସମସ୍ତ ଜୀବନରେ ଏଇ ପ୍ରଥମଥର ପାଇଁ ହିଁ ଏକ ଜଟିଳ ବିଷୟର ମୁଁ ସମ୍ମୁଖୀନ ହୋଇଛନ୍ତି । ପାଶ୍ଚାତ୍ୟ ନାଟ୍ୟଲେଖକ ଅୟ୍ୟୋନେସ୍କୋ ···

ମିଷ୍ଟର କାଣୀକର : (ଟେବୁଲ ବାଡେଇ) ଷ୍ଟପ୍ ଦ ନନ୍ସେନ୍ସ । ବିଷୟ ବସ୍ତୁର ବାହାରକୁ ଯାଆନ୍ତୁ ନାହିଁ ।

କାର୍ତ୍ତିକ : ଜଟିଳତା ପ୍ରଶ୍ନ ଉଠିବାରୁ ମୁଁ ସେକଥା ଉଠାଇଥିଲି ।

ସୁଖାମ୍ମେ : ଟେଗକଡେ ଯାହା କହୁଛନ୍ତି, ସେ ବିଷୟରେ ଆପଣଙ୍କର କଅଣ ସଂଶୋଧନ କରିବାର ରହିଛି ମିଷ୍ଟର କାର୍ତ୍ତିକ ?

କାର୍ତ୍ତିକ : ସତକଥା କହିବାକୁ ଗଲେ, ଟେଗକଡେ ଆସାମୀ ମିଧ୍ ଟବେଣାରେଙ୍କୁ ଗୁପୁଡ଼ା ମାରି ନାହାନ୍ତି ।

ଟେଗକଡେ : (କାନ୍ଦକାନ୍ଦ ହୋଇ) ନା, ମିଛ କଥା—

କାର୍ତ୍ତିକ : ପ୍ରକୃତରେ ଯାହା ଘଟିଥିଲା, ତାହା ମୋଟାମୋଟି ଏହି —ଆସାମୀ ଟେଗକଡେଙ୍କୁ ଅଟକାଇଲେ, ଘଟଣା କଣ ବୋଲି ଜାଣିବାକୁ ମୁଁ ଟିକଏ ଆଡ଼୍ଆଳରେ ରହି ସବୁ ଦେଖୁଥାଏ । ଆସାମୀ ପଚାରିଲେ ଟେଗକଡେଙ୍କୁ, ତମେ କଅଣ ଠିକ୍ କଲ ? ଟେଗକଡେ କହିଲେ, ମିସେସ୍ କାଣୀକରଙ୍କ ଅନୁମତିବିନା ମୁଁ କିଛୁ କରି ପାରିବି ନାହିଁ । ଆସାମୀ ତା'ପରେ ପଚାରିଲେ, "କେତେଦିନ

ମିସେସ୍ କାଶୀକରଙ୍କ ଦାସୀହୋଇ ରହିଥିବ ?"
ବୋକଡ଼େ କହିଲେ, "ସେଥିର ପ୍ରତିକାର ନାହିଁ । କେତେଜଣଙ୍କ ଭାଗ୍ୟ ଏମିତି ହୋଇଥାଏ । ମୁଁ ବିବାହ କଥା ଚିନ୍ତାକରି ନ ପାରେ ।" ଆସାମୀ ତାଙ୍କୁ କହିଲେ, "ପୃଥିବୀରେ ଭାବି ଦେଖ, ମୁଁ ତମର ସବୁ ସେବା ଯତ୍ନ କରିବି, ତମର ଆଉ କିଛି ଚିନ୍ତା ରହିବ ନାହିଁ । ମିଷ୍ଟର ଓ ମିସେସ୍ କାଶୀକରଙ୍କୁ ଡରିବା ପାଇଁ ଆଉ ତମର କାରଣ କିଛି ନଥିବ । ତମେ ସ୍ୱାଧୀନ ହୋଇଯିବ ।"
ବୋକଡ଼େ କହିଲେ, "ମତେ ଭୟ ଲାଗୁଛି । ତମର ଏ ଅବସ୍ଥାରେ ମୁଁ ତମକୁ ବିବାହ କଲେ ସମସ୍ତେ ମତେ ଛିଃ ଛିଃ କରିବେ । ଆମ ପରିବାରର କେହି ଏମିତି କାମ କେବେ କରିନାହିଁ । ମୋ ଉପରେ ଜବର୍ଦ୍ଦସ୍ତ କରନାହିଁ । ନହେଲେ ମୁଁ ମିସେସ୍ କାଶୀକରଙ୍କୁ କହିଦେବି ।" ବୋକଡ଼େ ଏକଥା କହିବାରୁ ଆସାମୀ ରାଗିଉଠି...

ବୋକଡ଼େ : ଏସବୁ ମିଛ ।

କାର୍ତ୍ତିକ : ଆସାମୀ ରାଗିଉଠି ବୋକଡ଼େ ଗାଲରେ ଠୋ କରି ଚାପୁଡ଼ା ଦେଲେ ।

[ବୋକଡ଼େର ହାତ ଅଜାଣତରେ ନିଜ ଗାଲ ପାଖକୁ ଚାଲିଯିବା]

ବୋକଡ଼େ : ମିଛ, ବିଲ୍‌କୁଲ୍ ମିଛ କଥା—

[ମିସେସ୍ କାଶୀକର ତାଙ୍କୁ ଚାହିଁଥିବା

ସୁଖାତ୍ମେ : Thank you ମିଷ୍ଟର କାର୍ତ୍ତିକ ! ଏଥିରୁ ଏକଥା ସ୍ପଷ୍ଟ ହୋଇଗଲା ଯେ, ଆସାମୀ ତାଙ୍କୁ ବାହାହେବା ପାଇଁ ବୋକଡ଼େ ଉପରେ ଚାପ ପକାଇଥିବା କଥା ସତ । କିଏ କାହାକୁ ଚାପୁଡ଼ା ମାରିଲା ସେ ସମ୍ପର୍କରେ ଆପଣ ଯାହା କହୁଛନ୍ତି ସେ କଥାରେ କିଛି ଯାହା ଫରକ ।

କାର୍ତ୍ତିକ : ମୁଁ ଯାହା କହୁଛି ନୁହେଁ—ମୁଁ ଯାହା ଦେଖିଛି ।

ସୁଖାମ୍ଟେ : ଠିକ୍ ଅଛି, ଠିକ୍ ଅଛି ମିଷ୍ଟର କାର୍ତ୍ତିକ ! ଏଥର ଆପଣ ଯାଇ ପାରନ୍ତି ।

କାର୍ତ୍ତିକ : ମୋର ଆହୁରି କିଛି କହିବାର ଅଛି ।

ମିଷ୍ଟର କାଶୀକର : ଯଦି ତାହା କିଛି ଅବାନ୍ତର ବା ଅନାବଶ୍ୟକ ନୁହେଁ, ତାହାଲେ ଶୁଣାଯାଇ ପାରେ । କିନ୍ତୁ କଥାକୁ ଜଟିଳ କରନ୍ତୁ ନାହିଁ ।

କାର୍ତ୍ତିକ : ମି. ଲର୍ଡ଼ !

ମିଷ୍ଟର କାଶୀକର : (ଟେବୁଲ ବାଡେଇ) ଅର୍ଡ଼ର । ଆପଣ ନିଜକୁ କଅଣ ଭାବୁଚନ୍ତି ? ଜଣେ ଓକିଲ ? ଅନ୍ୟ ସାକ୍ଷୀଙ୍କ ପରି Your ଲର୍ଡ଼ସିପ୍ ବୋଲି କହିବେ । ମି. ଲର୍ଡ଼ ନୁହେଁ ।

କାର୍ତ୍ତିକ : Your ଲର୍ଡ଼ସିପ୍ !

ମିଷ୍ଟର କାଶୀକର : Yes, that's the way. କିନ୍ତୁ ଆଉ କିଛି ଜଟିଳ କରନ୍ତୁ ନାହିଁ । ଆମେ ସବୁ ସାଧାସିଧା ଓ ସ୍ପଷ୍ଟ କଥା ଚାହୁଁ ।

ରୋକଡେ : (ହତାଶଭାବେ ମିସେସ୍ କାଶୀକରଙ୍କୁ ଧୀର କଣ୍ଠରେ) ମା !

ମିସେସ୍ କାଶୀକର : ମତେ କିଛି କହ ନାହିଁ ।

ରୋକଡେ : କିନ୍ତୁ ମା···

[ମିସେସ୍ କାଶୀକର ମୁହଁ ଅନ୍ୟପଟ ଫେରାଇ ନେବା । ରୋକଡେ ଅବସ୍ଥା ଆହୁରି ଶୋଚନୀୟ

କାର୍ତ୍ତିକ : ୟୋର ଲର୍ଡ଼ଶିପ୍ ଆସାମୀଙ୍କର ଜଣେ ମାଉସୀ-ପୁଅ ଭାଇଙ୍କ ସହିତ ମୋର ପରିଚୟ ଅଛି । ମାନେ ଦାଦର ଜିମ୍‌ଖାନାରେ ଏକ କ୍ରିକେଟ ମ୍ୟାଚ୍ ବେଳେ

ହଠାତ୍ ତାଙ୍କ ସହିତ ମୋର ଦେଖା ହୋଇଥିଲା । ମୋର ଜଣେ ବନ୍ଧୁ ସେଠି ଖେଳୁ ଥିଲେ । ଆସାମୀଙ୍କ ମାଉସୀପୁଅ ଭାଇଙ୍କର ମଧ୍ୟ ସେ ବନ୍ଧୁ ଥିଲେ । ସେ ଆସାମୀଙ୍କୁ ଜାଣନ୍ତି । ଅବଶ୍ୟ ପ୍ରତ୍ୟକ୍ଷ ପରିଚୟ ନଥିଲା । କିନ୍ତୁ ଆସାମୀଙ୍କୁ ତ ବହୁତ ଲୋକ ଜାଣନ୍ତି, ସେହି ସୂତ୍ରରେ ସେ ଜାଣିଥିଲେ ।

ମିଷ୍ଟର କାଶୀକର : ଆପଣ କାହିଁକି କଥା କହୁଛନ୍ତି କାହିଁକି ମିଷ୍ଟର କାର୍ତ୍ତିକ ? ଅଦାଲତର ମର୍ଯ୍ୟାଦା ମନେ ରଖିବାକୁ ହେବ ।

କାର୍ତ୍ତିକ : (ହଠାତ୍ ଅଦାଲତର ମର୍ଯ୍ୟାଦା ମନେ ପଡ଼ିଯିବାର ଢଙ୍ଗ କରି) Yes । ତାହେଲେ ଆସାମୀଙ୍କ ମାଉସୀପୁଅ ଭାଇ ଓ ମୋର ହଠାତ୍ ପରିଚୟ ହେଲା ଏବଂ ସେ ମୋତେ ଗୋଟିଏ ବଡ଼ ଖବର ଦେଲେ ।

ସୁଖାତ୍ମେ : କଅଣ ସେ ଖବର ?

କାର୍ତ୍ତିକ : ତା' ହେଉଛି ଆସାମୀ ଆଗରୁ ଥରେ ଆତ୍ମହତ୍ୟାର ଚେଷ୍ଟା କରିଥିଲେ ।

ସୁଖାତ୍ମେ : (ଆନନ୍ଦରେ) That's the point. ତାହେଲେ ଠିକ୍ ହେଲା ଆଗରୁ ମଧ୍ୟ ଏକ ଘଟଣା ରହିଛି ।

କାର୍ତ୍ତିକ : ତା' ମୁଁ ଠିକ୍ କହି ପାରିବ ନାହିଁ । ତେବେ କଅଣ ଘଟିଥିଲା ତା' ମୁଁ କହୁଛି । ମୁଁ ଯାହାଜାଣେ, ଆସାମୀ ଏକ ପ୍ରେମ ବ୍ୟାପାରରେ ହତାଶ ହୋଇ ଆତ୍ମହତ୍ୟା ଚେଷ୍ଟା କରୁଥିଲେ । ଆସାମୀଙ୍କ ୧୫ବର୍ଷ ବୟସରେ ଏ ଘଟଣା ଘଟିଥିଲା । ସେତେବେଳେ ସେ ପ୍ରେମରେ ପଡ଼ିଥିଲେ ତାଙ୍କର ନିଜ ମାମୁଁଙ୍କ ସହିତ ।

ମିସେସ୍ କାଶୀକର : (ଆଶ୍ଚର୍ଯ୍ୟ ହୋଇ) ନିଜ ମାମୁଁ ?

ସୁଖାତ୍ମେ : ମି. ଲର୍ଡ଼ ! ଆସାମୀଙ୍କ ମାମୁଁ—ମାନେ ମାଆଙ୍କ ଭାଇ— ବଡ଼ ଅସ୍ୱାଭାବିକ ସଂପର୍କ ତ !

ମିଷ୍ଟର କାଶୀକର : ଅନ୍ୟ କଥାରେ କହିବାକୁ ଗଲେ ପ୍ରଗ୍ର ଭ୍ରଷ୍ଟ ହୋଇ ଯିବାର ପ୍ରଥମ ପଦକ୍ଷେପ······ସୁଖାତ୍ମେ—Very fine, fine.

ସୁଖାତ୍ମେ : ମି. ଲର୍ଡ! ଆପଣ ଫାଇନ୍ ବୋଲି କାହାକୁ କହୁଛନ୍ତି ? ଆସାମୀଙ୍କ ସାଂପ୍ରତିକ ଚରିତ୍ର ଅବଶ୍ୟ ନିନ୍ଦନୀୟ । କିନ୍ତୁ ତାଙ୍କର ଅତୀତ ମଧ୍ୟ ପାପ ପଙ୍କିଳ, ଏ ଘଟଣାରୁ ତାହା ଦିବାଲୋକ ପରି ସ୍ପଷ୍ଟ ।

[ବେଣାରେ କଷ୍ଟମଷ୍ଟେ ଉଠି ଦ୍ୱାର ଆଡ଼କୁ ଯିବା ପାଇଁ ଚେଷ୍ଟା କରିବା । ମିସେସ୍ କାଶୀକର ତାଙ୍କୁ ଟାଣି ପୁଣି ଉକ୍‌ରେ ବସାଇ ଦେବା]

ମିସେସ୍ କାଶୀକର : ତମେ କୁଆଡ଼େ ଯିବାକୁ ବାହାରିଛ ? ଦ୍ୱାର ବନ୍ଦ ଅଛି । ଚୁପ୍‌ହୋଇ ବସ ।

କାର୍ତ୍ତିକ : ମୋର ଯାହା କହିବାର କଥା ମୁଁ ସବୁ କହି ସାରିଛି ।

[ନାଟକୀୟ ଭଙ୍ଗୀରେ ମି. କାଶୀକରଙ୍କ ଆଗରେ ମୁଣ୍ଡ ନୂଆଁଇ ସାକ୍ଷୀବକ୍ସ ଛାଡ଼ିବା]

ମିଷ୍ଟର କାଶୀକର : (ହଠାତ୍ କଣ ମନେ କରି ଟେବୁଲ ବାଡ଼ଇ) ଠିକ୍ କଥା,ଏକଦମ ଠିକ କଥା । ଟିକିଏ ବି ସନ୍ଦେହ କରିବାର ନାହିଁ ।

ସୁଖାତ୍ମେ : କେଉଁ ବିଷୟରେ ମି: ଲର୍ଡ ?

ମିଷ୍ଟର କାଶୀକର : ସୁଖାତ୍ମେ, ଅଦାଲତର ପରଂପରାକୁ ଟିକିଏ ଆଡ଼େଇ ମୁଁ ବର୍ତ୍ତମାନ ନିଜେ ଏକ ଗୁରୁତ୍ୱପୂର୍ଣ୍ଣ ସାକ୍ଷ୍ୟ ଦେବାକୁ ଯାଉଁଛି ।

ସୁଖାତ୍ମେ : ମି. ଲର୍ଡ···

ମିଷ୍ଟର କାଶୀକର : Yes, ଏ କେଶ୍‌ରେ ଗୋଟିଏ ବଡ଼ ସାମାଜିକ ମହତ୍ତ୍ୱ ରହିଛି ସୁଖାମ୍ରେ । ମୁଁ ମଜା କରୁ ନାହିଁ । ଅଦାଲତରେ ପରଂପରା ଆଡ଼େଇ ମତେ ସାକ୍ଷ୍ୟ ଦେବାକୁ ପଡ଼ିବ । କମ୍ ଅନ୍, ମୋର ପରମିସନ୍ ଗୃହୀତ୍ମ ।

ସୁଖାତ୍ମେ : ମି. ଲର୍ଡ଼ ! କେଶ୍‌ର ଗୁରୁତ୍ୱ ଦୃଷ୍ଟିରୁ ଅଦାଲତର ପରଂପରା କିଛି ସମୟ ଆଡ଼ଇଦେଇ ବିଚାରପତି ମହାଶୟ ନିଜେ ଜଣେ ସାକ୍ଷୀ ହୁଅନ୍ତୁ ବୋଲି ମୁଁ ନିବେଦନ କରୁଛି ।

ମିଷ୍ଟର କାଶୀକର : ନିବେଦନ ମଂଜୁର । (ସେ ସାକ୍ଷୀ ବକ୍‌ସକୁ ଆସିବା) କମ୍ ଅନ୍, ଏକ୍‌ଜାମିନ୍ ମି. ପଚାରନ୍ତୁ ।

[ତାଙ୍କ ଆଖି ବେଣାରେ ଉପରେ ନିବଦ୍ଧ

ସୁଖାତ୍ମେ : (ଉକିଲ ଢ଼ଙ୍ଗରେ) ମି: କାଶୀକର, ଆପଣଙ୍କ ବୃତ୍ତି ?

ମିଷ୍ଟର କାଶୀକର : ମୁଁ ସମାଜ କର୍ମୀ ।

ସୁଖାତ୍ମେ : ଆପଣ ଆସାମୀକୁ ଜାଣନ୍ତି ?

ମିଷ୍ଟର କାଶୀକର : ବେଶ ଭଲ ଭାବେ । ସମାଜରେ ସେ ଏକ ପାପଗ୍ରସ୍ତ । ଏହିସବୁ ଅବିବାହିତା ଯୁବତୀମାନଙ୍କ ସଂପର୍କରେ ଏହା ମୋର ଆନ୍ତରିକ ମତ ।

ସୁଖାତ୍ମେ : (ଅଧିକ ଉକିଲ ଢ଼ଙ୍ଗ ଦେଖାଇ) ଆପଣଙ୍କୁ ପଚାରି ନଗଲେ, ଆପଣ ନିଜ ମତାମତ ଦେବେ ନାହିଁ ମିଷ୍ଟର କାଶୀକର ।

ମିଷ୍ଟର କାଶୀକର : ମୋ ମତ ଯାହା, ତାହା ପ୍ରକାଶ କରିବାକୁ ମୁଁ କାହାର ଅନୁମତି ଲୋଡ଼େ ନାହିଁ ।

ପୋଙ୍କେ : ବ୍ରେଭୋ ।

ସୁଖାତ୍ମେ : ହେଉ ମିଷ୍ଟର କାଶୀକର । ଅଦାଲତ ଆଗରେ ଆସାମୀ ବିରୁଦ୍ଧରେ ଯେଉଁ ଅଭିଯୋଗ ଆସିଛି, ଆପଣ ସେ ସଂପର୍କରେ ଅଧିକ କିଛି ଆଲୋକପାତ କରି ପାରିବେ ?

ମିଷ୍ଟର କାଣୀକର : ସେଇଥିପାଇଁ ମୁଁ ଏଠି ଠିଆ ହୋଇଛି ।

ସୁଖାମ୍ନେ : ତାହେଲେ କୁହନ୍ତୁ ।

ମିଷ୍ଟର କାଣୀକର : (ବେଣାରଙ୍କୁ ଚାହିଁ) ମୁଁ ଅନେକ ସମୟରେ ବମ୍ବେର ପ୍ରସିଦ୍ଧ ନେତା ନାନା ସାହେବ ସିନ୍ଧେଙ୍କ ଘରକୁ ଯାଇଥାଏ । ଅବଶ୍ୟ ତାଙ୍କ ସହିତ ମୋର ଘନିଷ୍ଠତାର କାରଣ ହେଉଛି, ଉଭୟେ ସମାନ କର୍ମ କ୍ଷେତ୍ରର କର୍ମୀ । ତାଛଡ଼ା ସେ ଶିକ୍ଷା ସମିତିର ଚେୟାରମ୍ୟାନ । ଏହାକୁ ବାଦଦେଲେ, ସେ ତାଙ୍କ ନିଜ କ୍ଷେତ୍ରରେ ବଡ଼, ମୁଁ ମୋ ନିଜ କ୍ଷେତ୍ରରେ ବଡ଼ । ସେସବୁ କଥାନେଇ ଏଠି ଆଲୋଚନାର ଅବକାଶ ନାହିଁ । ମୁଁ କଅଣ କହୁଥିଲି କି, ଦିନେ ତାଙ୍କ ଘରେ ମୁଁ ଥିଲି । ରାତି ପ୍ରାୟ ନଅଟା ହେବ । ମୁଁ ଗୋଟାଏ ରୁମ୍‌ରେ ବସିଥାଏ । ଅନ୍ୟ ରୁମ୍‌ର କାହାର କଥାବାର୍ତ୍ତାର ସ୍ୱର ଶୁଣିଲି । ଗୋଟାଏ ସ୍ୱର ନାନା ସାହେବଙ୍କର; କିନ୍ତୁ ଅନ୍ୟ ସ୍ୱରଟି ମଧ୍ୟ ଚିହ୍ନା ଚିହ୍ନା ଲାଗିଲା ।

ମିସେସ୍ କାଣୀକର : ସେ କିଏ ?

ମିଷ୍ଟର କାଣୀକର : ସୁଖାମ୍ନେ, ମିସେସ୍ କାଣୀକରଙ୍କୁ ତାଗିଦ କରିଦିଅ ଯେ ଜଣେ ସାକ୍ଷୀ ଦେଲାବେଳେ ସେ ମଝିରେ ବାଧା ସୃଷ୍ଟି କରିବେ ନାହିଁ । ସେ ଦ୍ୱିତୀୟ ସ୍ୱର କାହାର ତାହା ମୁଁ ଅନୁମାନ କରିବା ପୂର୍ବରୁ କଥାବାର୍ତ୍ତା ବନ୍ଦ ହୋଇଗଲା । ଆଉ ନାନା ସାହେବ ସେ ଘରୁ ବାହାରକୁ ଆସିଲେ । ତାଙ୍କ ସହ ଆଲୋଚନା କରୁକରୁ ଏ ସମ୍ପର୍କରେ ମୁଁ ଜାଣିବାକୁ ଚାହିଁବାରୁ ସେ କହିଲେ ଶିକ୍ଷା ସମିତିର ଏକ ହାଇସ୍କୁଲର ଜଣେ ଶିକ୍ଷୟିତ୍ରୀ, ଆସିଥିଲେ । ସେ ଏଠାକୁ ବରାବର ଆସନ୍ତି । ତାଙ୍କ ସମ୍ପର୍କରେ ହେବାକୁ ଥିବା ଏକ ତଦନ୍ତ ଉପ କରିଦେବା ପାଇଁ ସେ ଆମକୁ କହୁଛନ୍ତି । ସେଇ କଥା

କହିବାକୁ ଆଜ ଆସିଥିଲେ । ସେ ଜଣେ ଯୁଙ୍ଗ ଓମ୍ୟାନ, ତେଣୁ ତାଙ୍କୁ ହଠାତ୍ ମନା କରିଦେଇ ହେଲନ । ପରେ କେତେବେଳେ ପୁଣି ଆସିବା ପାଇଁ କହିଛୁ । ନାନା ସାହେବ ମୋତେ ଏ ଶିକ୍ଷୟିତ୍ରୀଙ୍କ ନାଁ କହୁ କହିଲେ ନାହିଁ । ମୁଁ ସେତେବେଳେ ଭାବୁଥିଲି ସେ କିଏ ବୋଲି । ଆଜ ଏବେ ମୁଁ ଜାଣିପାରିଲି ଯେ, ସେ ଶିକ୍ଷୟିତ୍ରୀ ଆମ ମିସ୍ ବେଣାରେଙ୍କ ଛଡ଼ା ଆଉ କେହି ନୁହନ୍ତି । ମୁଁ ଶହେ ଏକ ପରସେଣ୍ଟ ନିଶ୍ଚିତ, ସେ ସ୍ୱର ମିସ୍ ବେଣାରେଙ୍କ ସ୍ୱର । ସେଥିରେ ଟିକିଏ ବି ସନ୍ଦେହ ନାହିଁ ।

ମିସେସ୍ କାଣୀକର : ହେ ଭଗବାନ !

ମିଷ୍ଟର କାଣୀକର : ସୁଖାତ୍ମେ, ମତେ ପଚାରନ୍ତୁ ମୁଁ କପରି ନିଶ୍ଚିତ ହେଲି । ଆଜ ସକାଳେ ମୁଁ ନାନା ସାହେବଙ୍କ ଜନ୍ମଦିନ ପାଇଁ ତାଙ୍କ ଘରକୁ ଏକ ଫୁଲତୋଡ଼ା ନେଇ ଯାଇଥିଲି । ମୁଁ ପହଞ୍ଚିବାବେଳକୁ ସେ ଫୋନରେ କାହାକୁ ଚଡ଼କରେ କହୁଥିଲେ, "ବିବାହ ପୂର୍ବରୁ ଗର୍ଭଧାରଣ କରିବା ଏକ ପାପ । ଏହିପରି ଜଣେ ସ୍ତ୍ରୀକୁ ଏ ଅବସ୍ଥାରେ ଶିକ୍ଷୟିତ୍ରୀ ଭାବେ ରଖିବା ମଧ୍ୟ ପାପ । ଏଥିର ଆଉ ବିକଳ୍ପ ପନ୍ଥା ନାହିଁ । ଏ ଶିକ୍ଷୟିତ୍ରୀଙ୍କୁ ଡ଼ିସମିସ୍ କରିବାକୁ ପଡ଼ିବ ।" ଶେଷରେ ନାନା ସାହେବ କହିଲେ, ଡ଼ିସ୍‌ମିସ୍ ଅର୍ଡ଼ର ମୋ ଦସ୍ତଖତ ପାଇଁ ପଠାଇ ଦିଅ ।

[ବେଣାରେ ହଟିବାକ୍]

ତା'ହାଲେ କିଏ ହୋଇଥିବ ସେ ଶିକ୍ଷୟିତ୍ରୀ ? କୁହନ୍ତୁ । ମୁଁ କହୁଛି ସେ ମିସ୍ ବେଣାରେ ।

ସାମନ୍ତ : ଆହା, ତାଙ୍କର କ'ଣ ଚାକିରି ଚାଲିଯିବ ?

ସୁଖାତ୍ମେ : ଆଉ ଉପାୟ ନାହିଁ । ଟିଟ୍ ଫର୍ ଟାଟ୍ । ଯେମିତି କର୍ମ, ସେମିତି ଫଳ । ସେଇଟା ହେଉଛି ଜୀବନର ନିୟମ ।

(ବ୍ରେକ୍‌ଡେଭ ନୋଟ୍‌ବୁକ୍ ଖୋଲି ଚିପି ଦେବା) କିନ୍ତୁ ମିଷ୍ଟର କାଶୀକର, ସେ ସ୍ପିଲେକ ମିସ୍‌ବେଣାରେ ବୋଲି ଆପଣ କିପରି ଧରିନେଲେ ?

ମିଷ୍ଟର କାଶୀକର : ମତେ କ'ଣ ପିଲାବୋଲି ଭାବୁଚନ୍ତି ଯେ ମୁଁ ଏମିତି ସରଳ କଥାଟା ବୁଝିପାରିବି ନାହିଁ ? ୪୦ ବର୍ଷ ହେଲା ମୁଁ ସମାଜକୁ ଅନୁଧ୍ୟାନ କରି ଆସୁଛି । ଅଭିଜ୍ଞତାକୁ ଉପାୟ କାହିଁ । ମୋର ଯୁକ୍ତିର ନିର୍ଭୁଲତା ସମ୍ପର୍କରେ ମୋ ମନରେ ଟିକିଏ ବି ସନ୍ଦେହ ନାହିଁ । ସେ ନିଶ୍ଚୟ ମିସ୍ ବେଣାରେ—ସେ କାଳି ଉଦ୍‌ମିସ୍ ଅର୍ଡର ପାଉଛନ୍ତି କି ନାହିଁ ଅପେକ୍ଷା କରି ଦେଖନ୍ତୁ । That's all. ଆଜିର ଏ କେଶ୍‌ରେ ଏଇ କଥା ହିଁ ମୋର କହିବାର ଥିଲା । (ସେ ସାକ୍ଷୀ ବକ୍‌ସରୁଡ଼ ପୁଣି ବିଚାରପତି ଆସନକୁ ଯାଇ) ବର୍ତ୍ତମାନ ମକଦ୍ଦମା ପୁଣି ଚାଲୁ ।

[ବେଣାରଙ୍କ ହାତରେ ଗୋଟାଏ ଗ୍ଲେଟ ଶିଶି । ସେ ତାଙ୍କ ପାଟିରେ ପୂରାଇବାକୁ ଗଲାବେଳେ, କାର୍ତ୍ତିକ ଦଉଡ଼ିଯାଇ ତାଙ୍କ ହାତରୁ ଛଡ଼ାଇଦେବା—ଶିଶିଟି ତଳେ ପଡ଼ିଯାଇ ପୋଙ୍କେର ପାଦ ଆଡ଼କୁ ଗଡ଼ି ଆସିବା]

ପୋଙ୍କେ : (ଶିଶି ଗୋଟାଇ, ଟେବୁଲ ଉପରେ ରଖି) ଟିକ୍ ଟ୍ୱେଣ୍ଟି ।

[ସାମାନ୍ୟ ଅସ୍ୱସ୍ତି ହେବା, ମି:କାଶୀକର ଶିଶି ଦେଖି ପୁଣି ଟେବୁଲରେ ରଖିବା]

ମିଷ୍ଟର କାଶୀକର : ବର୍ତ୍ତମାନ ମକଦ୍ଦମା ଚାଲୁ ।

ସୁଖାତ୍ମେ : ଏହି ଗୁରୁତ୍ୱପୂର୍ଣ୍ଣ ସାକ୍ଷ୍ୟ ପ୍ରମାଣ ସହ ସରକାରୀ ପକ୍ଷର ସାକ୍ଷ୍ୟ ସମ୍ପୂର୍ଣ୍ଣ ହେଲା । ମି:ଲର୍ଡ଼ ! ଦି କେଶ୍ ଫର୍ ପ୍ରସିକ୍ୟୁସନ ରେଷ୍ଟସ୍ ।

[ସେ ଯାଇ କ୍ଲାନ୍ତ ଭାବେ, ତାଙ୍କ ଚେୟାରରେ ବସିଯିବା]

ମିଷ୍ଟର କାଶୀକର : (ଅତ୍ୟନ୍ତ ଗାମ୍ଭୀର୍ଯ୍ୟସହ) ବର୍ତ୍ତମାନ ଆସାମୀ ପକ୍ଷର ଓକିଲ !

[ସୁଖାତ୍ମେ ଉଠିଯାଇ ଆସାମୀ ପକ୍ଷ ଓକିଲ ପାଇଁ ନିର୍ଦ୍ଦିଷ୍ଟ ଚଉକରେ ମୁଣ୍ଡ ନୁଆଇଁ ହତାଶଭାବେ ବସିବା]

ଆସାମୀଙ୍କ ଓକିଲ, ଆପଣଙ୍କ ପକ୍ଷ ସାକ୍ଷୀଙ୍କୁ ଡାକନ୍ତୁ ।

ସୁଖାତ୍ମେ : (ଉଠି) ପ୍ଲେସ୍ ମି. ଲର୍ଡ ! ଆମର ପ୍ରଥମ ସାକ୍ଷୀ ପ୍ରଫେସର ଡାମଲେ ।

ରୋକଡେ : (ଜମାଦାର ପରି ଡାକ) ପ୍ରଫେସର ଡାମଲେ ହାଜର, ପ୍ରଫେସର ଡାମଲେ, ନାଁ ସେ ହାଜର ନାହାନ୍ତି ।

ମିଷ୍ଟର କାଶୀକର : ନେକ୍ସ୍ଟ ଉଇଟ୍‌ନେସ୍ ପ୍ଲିଜ୍ ।

ସୁଖାତ୍ମେ : ଆମର ପରବର୍ତ୍ତି ସାକ୍ଷୀ, ନାନା ସାହେବ ସିନ୍ଧେ ।

ମିଷ୍ଟର କାଶୀକର : ସେ ବ ଅନୁପସ୍ଥିତ । ସେ ଏଠାକୁ କପରି ଆସିବେ ? Next ।

ସୁଖାତ୍ମେ : ତାଙ୍କ ଗ୍ରୁପର ଅନ୍ୟତମ ସଭ୍ୟ ମିଷ୍ଟର ଗବଡେ···

ମିଷ୍ଟର କାଶୀକର : ସେ ବ ଅଧିନାହାନ୍ତି, ଆସାମୀ ପକ୍ଷର କଅଣ ଏଇମାନେ ହିଁ ସାକ୍ଷୀ ?

ସୁଖାତ୍ମେ : ମୁଁ ସରକାରୀ ପକ୍ଷ ସକ୍ଷୀଙ୍କୁ କ୍ରସ ଏକ୍‌ଜାମୀନ୍ କରିବାକୁ ଚାହୁଁଛି ମି: ଲର୍ଡ !

ମିଷ୍ଟର କାଶୀକର ! ପରମିସନ୍ ରିଫ୍ୟୁଜ୍‌ଡ, ଟେକ୍ ଇୟୋର୍ ସିଟ୍ !

ସୁଖାତ୍ମେ : ଦ କେଶ୍ ଫର୍ ଏକ୍ୟୁଜ୍‌ଡ୍ ରେଷ୍ଟସ୍ ।

[ଆସାମୀ ପକ୍ଷ ଓକିଲଙ୍କ ଜାଗାରେ ବସିବା ]

ମିଷ୍ଟର କାଶୀକର : ଗୁଡ୍ । ବର୍ତ୍ତମାନ ସରକାରୀ ପକ୍ଷ ଓକିଲଙ୍କ ବକ୍ତବ୍ୟ । ଆଜି ସମୟ ନଷ୍ଟ କରନ୍ତୁ ନାହିଁ ।

[ସୁଖାତ୍ମେ ସ୍ଥାନ ବଦଳାଇ ସରକାରୀ ଓକିଲଙ୍କ ଚୌକିରେ ବସିବା ଓ ତାପରେ ହଠାତ୍ ପହିଲବାନ୍‌ଙ୍କ ଭଳି ଉଠି ଆଗେଇଯିବା]

ମିଷ୍ଟର କାଶୀକର : ଶୀଘ୍ର ସାରନ୍ତୁ ।

ସୁଖାତ୍ମେ : ମି: ଲର୍ଡ଼ ! ଆସାମୀ ମିସ୍ ଲୀଳା ବେଣାରେଙ୍କ ବିରୁଦ୍ଧରେ ଆସିଥିବା ଅଭିଯୋଗ ବାସ୍ତବିକ୍ ଅତି ଭୟଙ୍କର । ସ୍ୱର୍ଗଠାରୁ ମଧ୍ୟ ପବିତ୍ର ଯେଉଁ ମାତୃତ୍ୱ, ତାହାପ୍ରତି ଏ ମହିଳା ଯେଉଁ କଳଙ୍କ ଲଗାଇଛନ୍ତି, ଏଥିପାଇଁ ଆଇନ୍ ତାଙ୍କୁ ଯେତେବଡ଼ ଦଣ୍ଡ ଦେଲେ ମଧ୍ୟ ସେ ଦଣ୍ଡ ଯଥେଷ୍ଟ ହେବ ନାହିଁ । ଆସାମୀଙ୍କ ଚରିତ୍ର ଅତି ନିନ୍ଦନୀୟ । ଖାଲି ସେତିକ ନୁହେଁ, ତାଙ୍କର ଆଚରଣ ସବୁପ୍ରକାର ସାମାଜିକ ଓ ନୈତିକ ମୂଲ୍ୟବୋଧ ପ୍ରତି ଏକ ଆଘାତ । ଏ ଆସାମୀ ସମାଜର ପହିଲା ନମ୍ବର ଶତ୍ରୁ । ସମାଜ ପ୍ରତି ଏତେ ଧ୍ୱଂସକାରକ ହୋଇଥିବା ପ୍ରବୃତ୍ତିମାନଙ୍କୁ ଯଦି ପ୍ରୋତ୍ସାହନ ଦିଆଯାଏ, ତା'ହେଲେ ଦେଶ ଓ ସଭ୍ୟତା ନିଶ୍ଚୟ ଧୂଳିସାତ ହେବ । ତେଣୁ ମୁଁ କହୁଛି ଯେ, ଆସାମୀଙ୍କ ଅପରାଧ ସମ୍ପର୍କରେ ଅଦାଲତ କଠୋର ଦୃଷ୍ଟିରେ ବିଚାର କରିବା ଦରକାର । ଏଥିରେ କୌଣସି ଭାବ-ପ୍ରବଣତାକୁ ସ୍ଥାନଦେବା ଉଚିତ ନୁହେଁ । ଆସାମୀ ବିରୁଦ୍ଧରେ ଶିଶୁହତ୍ୟାର ଅଭିଯୋଗ ଆସିଛି । କିନ୍ତୁ ଆସାମୀ ତା' ଅପେକ୍ଷା ମଧ୍ୟ ଅଧିକ ଗୁରୁତର ଅପରାଧରେ ଦୋଷୀ । ସେ ଅପରାଧ ହେଉଛି ବିନା ବିବାହରେ ମାତୃତ୍ୱ । ବିନା ବିବାହରେ ମାତୃତ୍ୱ ଆମ ଧର୍ମରେ ଓ ଆମ ପୂର୍ବପୁରୁଷଙ୍କ ଦ୍ୱାରା ଏକ ବଡ଼ପାପ

ଭାବରେ ପରଗଣିତ । ଅଧିକନ୍ତୁ ଆସାମୀ ଏହି ଅବୈଧ ମାତୃତ୍ୱଜନିତ ସନ୍ତାନକୁ ପ୍ରତିପାଳନ କରିବା ପାଇଁ ଯେଉଁ ଇଚ୍ଛା ପୋଷଣ କରନ୍ତି, ତାହା ଯଦି ପୂରଣ ହେବାକୁ ଦିଆଯାଏ, ତାହେଲେ ମୋର ଆଶଙ୍କା, ହୁଏତ ଆମ ସମାଜର ଭିତ୍ତି ବିପନ୍ନ ହୋଇ ପଡ଼ିବ । ସମାଜରେ ଆଉ ନୈତିକ ମୂଲ୍ୟବୋଧ ବୋଲି କିଛି ରହିବ ନାହିଁ । ମି: ଲର୍ଡ଼ ! ଶିଶୁହତ୍ୟା ଏକ ବଡ଼ ଅପରାଧ । କିନ୍ତୁ ଏକ ଅବୈଧ ପ୍ରେମ ଜନିତ ସନ୍ତାନକୁ ସମାଜରେ ବଢ଼ାଇବା ତା' ଅପେକ୍ଷା ଆହୁରି ଗୁରୁତର ଅପରାଧ । ଏହାକୁ ପ୍ରୋତ୍ସାହନ ଦିଆଗଲେ, ସମାଜରେ ବିବାହର ମର୍ଯ୍ୟାଦା ଆଉ ରହିବ ନାହିଁ । ଅନୀତି, ଅନାଚାର ବ୍ୟାପକ ହୋଇ ଉଠିବ । ଆମରି ଆଖି ଆଗରେ ପରମ୍ପରାର ଅନୁଶାସନ ଦ୍ୱାରା ଗଢ଼ାହୋଇଥିବା ଏକ ସମାଜର ସୁନ୍ଦର ସ୍ୱପ୍ନ ମାଟିରେ ମିଶିଯିବ । ଆମ ପରମ୍ପରା, ଆମ ଗର୍ବ, ଏପରିକି ଆମରି ସଂସ୍କୃତି, ଆମ ଧର୍ମ, ଏସବୁ ମୂଳରେ କୁଠାରଘାତ କରିବାକୁ ଆସାମୀ ବଦ୍ଧପରିକର ହୋଇଥିବା ଜଣା ପଡ଼ୁଛି । ତେଣୁ ପ୍ରତ୍ୟେକ ବିଚାରଶୀଳ ଓ ସଚ୍ଚା ନାଗରିକଙ୍କ ସର୍ବପ୍ରଥମ କର୍ତ୍ତବ୍ୟ ହେଉଛି ଏପରି ପ୍ରବୃତ୍ତିକୁ ତୁରନ୍ତ ବିନଷ୍ଟ କରିବା । ଆସାମୀ ଜଣେ ମହିଳାବୋଲି ତାଙ୍କୁ ଦୟା ଦେଖାଯିବା ଉଚିତ ନୁହେଁ । ସମାଜର ଉଚ୍ଚ ମୂଲ୍ୟବୋଧକୁ ରକ୍ଷାକରିବା ଦାୟିତ୍ୱ ହେଉଛି ନାରୀର । ନାରୀ ସ୍ୱାତନ୍ତ୍ର୍ୟମହର୍ଣ୍ଣିତ । ନାରୀକୁ ସ୍ୱାଧୀନତା ଦିଆଯିବା ଉଚିତ ନୁହେଁ । ପୁରାଣକାଳରୁ ଏହି ନୀତି ଚାଲିଆସିଛି । ଏ ନୀତି ଅନୁଯାୟୀ ମୁଁ ଦୃଢ଼ ଭାବରେ କହୁଛି ଯେ, ମିସ୍ ବେଣାରେ କ୍ଷମାର ଯୋଗ୍ୟା ନୁହନ୍ତି । ତାଙ୍କ ପ୍ରତି କୌଣସି ଅନୁକମ୍ପା ପ୍ରଦର୍ଶନ କରା ନଯାଉ । ଏ ଅପରାଧ ପାଇଁ ତାଙ୍କୁ ଚରମ ଶାସ୍ତି ଦିଆଯିବା ଉଚିତ

ଏହା କହି ମୁଁ ସରକାରୀ ପକ୍ଷର ତର୍କ ଶେଷ କରୁଛି ।

ମିଷ୍ଟର କାଶୀକର : ଗୁଡ୍, ବର୍ତ୍ତମାନ ଆସାମୀ ପକ୍ଷର ଓକିଲ ଉଠନ୍ତୁ ।

[ସୁଖାମ୍ବେ ଆସାମୀ ପକ୍ଷର ଓକିଲ ହୋଇ ପୁଣି ଉଠିବା, ଏଥର କିନ୍ତୁ ତାଙ୍କ ମୁହଁରେ ବିଷଣ୍ଣ ଭାବ]

ସୁଖାମ୍ବେ : (ଅତି ଗମ୍ଭୀର ଓ ବିଷଣ୍ଣ ଭାବେ ପାଦ ବଢ଼ାଇ ଆବେଗ କଂପିତ ଗଳାରେ) ମି. ଲର୍ଡ ! ଏ ଅପରାଧ ଯେ ଗୁରୁତର, ଏକଥା ମୁଁ ଅସ୍ୱୀକାର କରୁନାହିଁ । କିନ୍ତୁ ଭୁଲ କରିବା ମଣିଷ ପକ୍ଷେ ସ୍ୱାଭାବିକ । ଏହାଛଡ଼ା ଯୌବନ ମଣିଷକୁ ଅନେକ ସମୟରେ ପଥଭ୍ରଷ୍ଟ କରିଥାଏ । ଏହି କଥାକୁ ଦୃଷ୍ଟିରେ ରଖି ଆସାମୀଙ୍କୁ ଦୟା କରିଯିବାକୁ ମୁଁ ନିବେଦନ କରୁଛି । ଦୟା ମି. ଲର୍ଡ ! ମାନବିକତାର ଦୃଷ୍ଟିରୁ ଦୟା କରନ୍ତୁ ।

ମିଷ୍ଟର କାଶୀକର : ଗୁଡ୍ । ନାଓ ଆସାମୀ ବେଣାରେ—

[ ବେଣାରେ ସ୍ଥିର ହୋଇ ଠିଆ ହୋଇଥିବା ]

ଆସାମୀ ମିସ୍ ବେଣାରେ, ରାୟ ଘୋଷଣା ପୂର୍ବରୁ ଏ ଅଭିଯୋଗ ସଂପର୍କରେ ତମର କିଛି କହିବାର ଅଛି ? (ଘଡ଼ିଦେଖି) ଏଥିପାଇଁ ତମକୁ ଦଶ ସେକେଣ୍ଡ ସମୟ ଦିଆଯାଉଛି ।

[ମିସ୍ ବେଣାରେ ପୂର୍ବପରି ନିଶ୍ଚଳ । ପୃଷ୍ଠ ଭୂମିରୁ କେଉଁଠୁ ଏକ ସଙ୍ଗୀତର ସ୍ୱର ଶୁଭିବା—ରଙ୍ଗମଞ୍ଚରେ ଆଲୋକ ବଦଳିଯିବା — ଅଦାଲତରେ ଯିଏ ଯେଉଁଠାରେ ଅଛନ୍ତି ସମସ୍ତେ ସେଠି ସ୍ଥିର ହୋଇଯିବା । ବେଣାରେ ଧୀରେ ଉଠି ସିଧା ଠିଆ ହେବା]

ବେଣାରେ : ହଁ, ମୋର ବହୁତ କଣ୍ଠ କହିବାର ରହିଛି ।
(ବ୍ୟଥାଭରା କଣ୍ଠରେ) ବର୍ଷ ବର୍ଷ ଧରି ମୁଁ କିଛି କହି ପାରିନାହିଁ । କହିବାର ବହୁତ ସୁଯୋଗ ଆସିଛି, ପୁଣି ହାତରୁ ଖସିଯାଇଛି । ମୋ କଣ୍ଠରେ କେତେ ଯେ ତୋଫାନ ଜମିଆସିଛି, ହୃଦୟରେ କେତେ ଯେ ବ୍ୟଥା ଜମାଟ ବାନ୍ଧିଛି, କିନ୍ତୁ ମୁଁ ପ୍ରକାଶ କରିପାରିନାହିଁ । ମୋର ମନେ ହୋଇଛି, କେହି ବୁଝିବେ ନାହିଁ, କେହି ଆଦୌ ବୁଝିବେ ନାହିଁ । ଯେତେବେଳେ ଭିତରର କଥା ସବୁ ବଡ଼ ବଡ଼ ଲହରୀପରି ବାହାରି ଆସି ଓଠରେ ପିଟି ହୋଇଛି, ସେତେବେଳେ ମୋର ମନେ ହୋଇଛି, ମୋ ଘରପାଖରେ ଆତଯାତ ହେଉଥିବା ଏ ମଣିଷଗୁଡାକ କେଡ଼େ ନିର୍ବୋଧ, କେଡ଼େ ଅର୍ବାଚୀନ । ଏପରିକି ମୁଁ ଯାହାଙ୍କୁ ଆପଣାର ବୋଲି ଭାବେ·· ସେମାନେ ବି । ସେତେବେଳେ ସେମାନଙ୍କ ପ୍ରତି ମୋ ଭିତରୁ ଖାଲି ଅଟ୍ଟହାସ୍ୟ ଉଠିଆସେ । ଆଉ, ତା'ପରେ ମୁଁ କାନ୍ଦେ ···ବୁକୁ ଫଟାଇ କାନ୍ଦେ—ଇଚ୍ଛା ହୁଏ କାନ୍ଦକାନ୍ଦ ଗ୍ରୁଡି ପାହିଯାନ୍ତା କି । ଜୀବନଟା ବଡ଼ ଅବାଞ୍ଛିତ ହୋଇ ଉଠେ । — (ଦୀର୍ଘଶ୍ୱାସ ମାରି) କିନ୍ତୁ ଯେତେବେଳେ ଜୀବନଟା ହରାଇବାକୁ ଚାହିଁଲେ ମଧ୍ୟ ତା ଯାଏ ନାହିଁ, ସେତେବେଳେ ହିଁ ଜୀବନର ମୂଲ୍ୟ ଉପଲବ୍ଧି କରିହୁଏ । ସେତେବେଳେ ବୁଝିହୁଏ ଜୀବନର ମହତ୍ତ୍ୱ, ସେତେବେଳେ ଜାଣିହୁଏ ସୁଖ ଆନନ୍ଦର ଅର୍ଥ । ତା'ପରେ ପ୍ରତ୍ୟେକ ମୁହୂର୍ତ୍ତ କେଡ଼େ ଅଭିନବ, କେଡ଼େ ଚମତ୍କାର ହୋଇଉଠେ ! ସେତେବେଳେ ନିଜକୁ ମଧ୍ୟ ନିଜ ପାଖରେ ନୂଆ ଜଣାପଡ଼େ । ଆକାଶ, ପକ୍ଷୀ, ମେଘ, ପବନରେ ଦୋହଲୁଥିବା କୌଣସି ଶୁଖିଲା ଗଛର ଶାଖା, ଝରକାର ପରଦା ଘରପାଖର ଶାନ୍ତ ନୀରବତା···ଅଜ ଦୂରରୁ ଭାସି ଆସୁଥିବା କୌଣସି

ମୃଦୁ ଗନ୍ଧ – ଏପରିକ ଡ଼ାକ୍ତରଖାନାର ଔଷଧମାନଙ୍କ ଗନ୍ଧ—ଏସବୁ ଜୀବନର ଆନନ୍ଦରେ ଭରପୂର ମନେହୁଏ । ମନେହୁଏ, ଚତୁର୍ଦ୍ଦିଗରେ ଜୀବନର ଉଲ୍ଲାସ ଖେଳି ବୁଲୁଛି ଏବଂ କେବଳ ମୋର ପାଇଁ ତୋଳି ଚାଲିଛି ସଙ୍ଗୀତର ମୂର୍ଚ୍ଛନା । ବାସ୍ତବିକ୍, ଆତ୍ମହତ୍ୟା କରିବାକୁ ଯାଇ ବିଫଳ ହେବାରେ ଏକ ମହାନ୍ ଆନନ୍ଦ ରହିଛି । ତାହା ଜୀବନର ବେଦନାଠାରୁ ମଧ୍ୟ ଅଧିକ ମହତ୍ତ୍ୱପୂର୍ଣ୍ଣ । (ଦୀର୍ଘଶ୍ୱାସ) ଜୀବନଟାକୁ ହତାଦର କରି ଫୋପାଡ଼ିଦିଅ—ତା'ହେଲେ ଯାଇଁ ଜାଣିବ ଜୀବନର ଅସଲ ମହତ୍ତ୍ୱ । ଲୋଭୀଙ୍କ ପରି ଜାବୁଡ଼ି ଧରିବସିଲେ ତାହା ମୂଲ୍ୟହୀନ, ଅର୍ଥହୀନ ହୋଇ-ପଡ଼ିବ । ତା'ପରେ ତାକୁ ଫୋପାଡ଼ି ଦେବାକୁ ଇଚ୍ଛା ହେବ । ବେଶ୍ ବିଚିତ୍ର ନା ?

ତାକୁ ଜାବୁଡ଼ି ଧର—ସେତେବେଳେ ମନେ ହେବ ତାକୁ ଫୋପାଡ଼ି ଦେବା ଉଚିତ । ତାକୁ ଫୋପାଡ଼ି ଦିଅ··· ଦେଖିବ, ତାହା କେଡ଼େ ମହତ୍ତ୍ୱପୂର୍ଣ୍ଣ ହୋଇଉଠିଛି, କିନ୍ତୁ ସେଥିରୁ ଯାଇନାହିଁ ।···ବାରମ୍ବାର ସେଇ ଏକା କଥା—(କ୍ଲାସ୍‌ରୁମରେ କହିବା ଭଳି) ଜୀବନ ଏହିପରି, ଜୀବନଟା ଏହା—ଜୀବନଟା ଗୋଟାଏ ପୁରୁଣା ବହି ପରି, ଯାହାର ପୃଷ୍ଠା ଚିରିଯାଉଛି । ଜୀବନଟା ନିଜେ ନିଜକୁ ଦଂଶନ କରୁଥିବା ଗୋଟାଏ ଭୟଙ୍କର ସାପ । ଜୀବନଟା ଏକ ପ୍ରତାରଣା, ଜୀବନଟା ଏକ ପ୍ରବଞ୍ଚନା, ଜୀବନଟା ଏକ ନିଶା, ଜୀବନଟା ଏକ ବିରକ୍ତିକର ଯାତ୍ରା—ଜୀବନଟା କିଛି ନୁହେଁ, ଜୀବନଟା ଶୂନ୍ୟ······

[ଅଦାଲତରେ ଓକିଲ କହିବା ଢଙ୍ଗରେ]

ମି:ଲର୍ଡ଼ ! ଜୀବନଟା ବଡ଼ ଭୟଙ୍କର ଜିନିଷ । ଜୀବନଟାକୁ ଫାଶୀ ଦିଆଯିବା ଉଚିତ । "ନ ଜୀବନ ଜୀବନମଧ୍ୟେ'ତି"... ଜୀବନ ବିରୁଦ୍ଧରେ ମକଦ୍ଦମା କରନ୍ତୁ, ତାକୁ ଦଣ୍ଡ ଦିଅନ୍ତୁ, ତାକୁ ଗୃହକରୀରୁ ବାହାର କରି ଦିଅନ୍ତୁ, କିନ୍ତୁ କାହିଁକି ? କିନ୍ତୁ କାହିଁକି ? ମୁଁ କଅଣ ମୋ କର୍ତ୍ତବ୍ୟରେ କେବେ ହେଳା କରିଛି ? ପିଲାଙ୍କ ସହିତ ମୁଁ ମୋ ଜୀବନଟାକୁ ଓତଃପ୍ରୋତ ଭାବେ ଜଡ଼ାଇ ଦେଇଛି । ସେମାନଙ୍କୁ କେତେ ଭଲପାଏ ମୁଁ । କେତେ ନିଷ୍ଠାରସହ ତାଙ୍କୁ ମୁଁ ପାଠ ପଢ଼ାଇଛି । ମୁଁ ଜାଣେ ଜୀବନ ସରଳ ନୁହେଁ । ଲୋକେ ବଡ଼ ନିଷ୍ଠୁର ହୋଇପାରନ୍ତି, ଏପରିକି ତମ ନିଜ ଆତ୍ମୀୟ ମଧ୍ୟ ତମକୁ ଠିକ୍ ବୁଝି ପାରିବେ ନାହିଁ । ଜୀବନରେ କେବଳ ଗୋଟାଏ କଥା ସମସ୍ତଙ୍କ ପକ୍ଷରେ ବଡ଼, ଶରୀର । ଆପଣ ମାନନ୍ତୁ ବା ନ ମାନନ୍ତୁ, ସେଇଟା ହିଁ ସତ କଥା । ଭାବାବେଗ କଥା ଯାହା କୁହାଯାଏ, ସେଇଟା କେବଳ ମୁହଁର କଥା । କି ଅନ୍ତର୍ବେଦନା ଭିତର ଦେଇ ମୁଁ ନ ଯାଇଛି; କିନ୍ତୁ ସେ ବିଷ ମୁଁ ଚୁପ୍ ଚୁପ୍ ପିଇଛି । ବାହାରର କାହାରିକୁ କିଛି ଜାଣିବାକୁ ଦେଇନାହିଁ । ମୁଁ ପିଲାଙ୍କୁ ସୌନ୍ଦର୍ଯ୍ୟର କଥା ଶିଖାଇଛି, ପବିତ୍ରତାର କଥା ଶିଖାଇଛି । ମୁଁ ଭିତରେ ଭିତରେ କାନ୍ଦିଛି; କିନ୍ତୁ ସେମାନଙ୍କୁ ସବୁବେଳେ ହସାଇବାକୁ ଚେଷ୍ଟାକରିଛି । ମୁଁ ହତାଶାରେ ଜଳିଛି, କିନ୍ତୁ ସେମାନଙ୍କୁ ଆଶାର ପ୍ରେରଣା ଦେଇଛି । ମୋର କେଉଁ ପାପ ପାଇଁ ମୋ ଗୃହକରୀ, ମୋର ଏକମାତ୍ର ଆଶ୍ୱାସନାର ଅବଲମ୍ବନକୁ ମୋଠୁ ଛଡ଼ାଇ ନିଆଯାଉଛି ? ମୋ ବ୍ୟକ୍ତିଗତ ଜୀବନ ମୋ ନିଜକଥା । ମୋ ବ୍ୟକ୍ତିଗତ ଜୀବନରେ ମୁଁ କଅଣ କରିବି ନ କରିବି ତା' ମୁଁ ନିଜେ ବିଚାର କରିବି । ସେଥିରେ ଅନ୍ୟମାନଙ୍କର

କହିବାର କଅଣ ଅଛି ? ପ୍ରତ୍ୟେକ ଜୀବନରେ ନିଜର କିଛି ଲକ୍ଷ, କିଛି ଅଭିଳାଷ ଥାଏ । ଏଥିରେ ଅନ୍ୟମାନଙ୍କର କଅଣ ଥାଏ ? (ହଠାତ୍ ସେ ସ୍କୁଲରେ ପିଲଙ୍କୁ ପଢ଼ାଇବାପରି ହାଲୁକା ମନରେ) ହିସ୍—ଚୁପ୍ ଚୁପ୍, ପାଟି କରନାହିଁ । ଏତେ ହଟ୍ଟଗୋଳ କାହିଁକି ? (ଡେସ୍କରୁ ବାହାରିଆସି କ୍ଲାସ୍‌ରେ ବୁଲିଲାପରି ଚାରିଆଡ଼େ ବୁଲିବା) ଚୁପ୍‌ଚାପ, ପଥର ମୂର୍ତ୍ତିପରି ସବୁ ବସିରହ । (ସମସ୍ତେ ନିଶ୍ଚଳ ହୋଇ ବସିଥିବା ଲକ୍ଷ କରି) ଆଃ, ଛାତ୍ରଗଣମାନେ ! ପିଲାଏ, ଏମାନେ ସବୁ କିଏ ? (ଜଣଜଣ କରି ସମସ୍ତଙ୍କ ଉପରେ ଆଲୁଅର ଫୋକସ୍ ପଡ଼ିବା—ସମସ୍ତେ ଯେମିତି ସନ୍ତ୍ରସ୍ତ-ଆତଙ୍କିତ) ଏମାନେ ହେଉଛନ୍ତି ବିଂଶ ଶତାବ୍ଦୀର ସଭ୍ୟ ମଣିଷଙ୍କ କେତୋଟି ପ୍ରେତ । ତାଙ୍କ ମୁହଁକୁ ଦେଖ, କେମିତି ଭୟଙ୍କର ଦେଖାଯାଉଛନ୍ତି । ସେମାନଙ୍କ ମୁହଁରେ କେତେଟା ମିଠା ମିଠା ପୁରୁଣା ବୋଲି—ଆଉ ପେଟରେ ଗୁଡ଼ାଏ ଅତୃପ୍ତ କାମନା—

(ସ୍କୁଲର ଘଣ୍ଟାଟିଏ—ପିଲଙ୍କ କଲରୋଳର ଶବ୍ଦ ଦୂରରୁ ଭାସିଆସିବା—ମୁହୂର୍ତ୍ତକ ପାଇଁ ମିସ୍ ବେଣାରେ ଚଟ୍‌ଫଟ୍— ସେ ଶବ୍ଦକୁ କାନେଇବା ଓ ଭାବବିହ୍ୱଳ ହୋଇପଡ଼ିବା । କ୍ରମେ ଶବ୍ଦ ଦୂରେଇ ଯିବା —ନୀରବତା । ଚାରିଆଡ଼କୁ ଚାହିଁ ମିସ୍ ବେଣାରେ ହଠାତ୍ ସଚେତନ ହୋଇଉଠିବା—ଏ ନୀରବତା ଦେଖି ହଠାତ୍ ସେ ଯେମିତି ଭୟଭୀତ ହୋଇଉଠିବା)

ନଁ ନାଁ ମତେ ଏକୁଟିଆ ଛାଡ଼ଯାଅ ନାହିଁ । ମତେ ସେମାନଙ୍କୁ ଭୟଲାଗୁଛି ।

(ସନ୍ତ୍ରସ୍ତଭାବେ ସେ ମୁହଁ ହାତରେ ଲୁଚେଇବା — କହିବାବେଳେ ଥରୁଥାଆନ୍ତି) ହଁ ସତ, ମୁଁ ଗୋଟାଏ

ପାପ କରିଛି । ହଁ, ମୁଁ ମୋ ମାଆଙ୍କ ଭାଇ, ମୋ ମାମୁଁଙ୍କର ପ୍ରେମରେ ପଡ଼ିଥିଲି । ଘରର କଡ଼ା ଅନୁଶାସନ ଭିତରେ ପ୍ରଥମ ଯୌବନ ଯେବେ ମୋ ତନୁ ମନରେ ଶିହରଣ ସୃଷ୍ଟି କରୁଥାଏ—ସେତେବେଳେ ସେହି ଏକମାତ୍ର ଲୋକ, ଯେ କି ମୋ ନିକଟତର ହୋଇଥିଲେ, ମତେ ଆଦର କରିଥିଲେ, ମୋ ଯୌବନର ପ୍ରଶଂସା କରିଥିଲେ । ମୁଁ କେମିତି ସେତେବେଳେ ଜାଣନ୍ତି ଯେ, ମୋ ସର୍ବସ୍ୱ ଦେଇ ମୁଁ ଯାହାଙ୍କ ସହିତ ଏକାତ୍ମ ହୋଇଯିବାକୁ ଚାହୁଁଥିଲି, ଯାହାଙ୍କ ସଂସ୍ପର୍ଶରେ ମୋର ସମସ୍ତ ଜୀବନ ସାର୍ଥକ ମନେ ହେଉଥିଲା, ସେ ମୋର ମାମୁଁ ହୋଇଥିବା ଯୋଗୁଁ ଏସବୁ କଥା ପାପ ? ମୋ ବୟସ ସେତେବେଳେ ୧୪ରୁ ବେଶୀ ନଥିଲା । ପାପ କଅଣ —ପୁଣ୍ୟ କଅଣ, ସେତେବେଳେ ସେ ସମ୍ପର୍କରେ କିଛି ଧାରଣା ମୋର ନ ଥିଲା । ମୁଁ ମୋ ମାଆଙ୍କ ନାମରେ ଶପଥ କରି କହୁଛି ମୁଁ କିଛି ଜାଣି ନଥିଲି—(ଜୋରରେ କାନ୍ଦିଉଠବା) ମୁଁ ତାଙ୍କୁ ବାହା ହେବାକୁ ଜିଦ୍ କରିଥିଲି । କାହିଁକି ନା ତାଙ୍କୁ ନେଇ ମୋର ସେଉଁ ସୁନ୍ଦର ସ୍ୱପ୍ନ, ତାହାକୁ ମୁଁ ବାସ୍ତବରୂପ ଦେବାକୁ ଚାହୁଁଥିଲି । ଅନ୍ୟମାନଙ୍କ ପରି ମୁଁ ମଧ୍ୟ ଚାହୁଁଥିଲି ଏକ ସୁନ୍ଦର ସଂସାର । କିନ୍ତୁ—ସମସ୍ତେ, ଏପରିକି ମୋ ମାଆ ମଧ୍ୟ ସେଥିରେ ବାଧାଦେଲେ । ଆଉ ମୋର ସେ ସହାସୀ ବୀର, ସେ ଶେଷରେ ଲାଙ୍ଗୁଡ଼ ଜାକି ପଳାୟନ କଲେ । ସେତେବେଳେ ତାଙ୍କପ୍ରତି ମୋ ମନରେ ଏତେ କ୍ରୋଧ ହେଲା, ଏତେ କ୍ରୋଧ ଯେ, ତାଙ୍କୁ ସାମନାରେ ପାଇଲେ, ତାଙ୍କ ମୁହଁ ବାମ୍ଫୁଡ଼ି ବଦାରି ସମସ୍ତଙ୍କ ଆଗରେ ତା' ଉପରେ ଛେପ ପକେଇବାକୁ ମୋର ଇଚ୍ଛା ହେଉଥାଏ; କିନ୍ତୁ

ମୁଁ ସେତେବେଳେ ସ୍ୱାନବଳ ବାଳକା ଥିଲି, ମରିବା ପାଇଁ ଘୃତଉପରୁ ତଳକୁ ଡେଇଁ ପଡ଼ିଥିଲି; କିନ୍ତୁ ମୃତ୍ୟୁ ମୋର ହେଲନାହିଁ । ମୋର ମନେ ହେଉଥିଲା ଯେମିତି ମୋର ହୃତ୍‍ପିଣ୍ଡ ବନ୍ଦ ହୋଇଯାଇଛି; କିନ୍ତୁ ତା' ହୋଇ ନଥିଲା, ମୁଁ ବଞ୍ଚିଗଲି । ତା'ର ବହୁଦିନ ପରେ ଆଜିଥରେ ମୁଁ ପ୍ରେମରେ ପଡ଼ିଲି, ମୁଁ ସେତେବେଳକୁ ବଡ଼ ହୋଇଗଲଣି । ମୁଁ ମୋର ସମସ୍ତ ହୃଦୟଦେଇ ଭଲ ପାଇଲି । ମୁଁ ଭାବିଲି ଏହା ଆଗଥର ପରି ହେବ ନାହିଁ । ଏ ପ୍ରେମ ବୌଦ୍ଧିକ ପ୍ରେମ-ଜଣେ ଅସାଧାରଣ ବିଦ୍ୱାନଙ୍କ ପ୍ରତି ପ୍ରେମ । ଏ ପ୍ରେମ ନୁହେଁ—ଏକ ପ୍ରକାର ପୂଜା । କିନ୍ତୁ ଏଥର ମଧ୍ୟ ସେଇ ଏକା ଭୁଲ ହେଲା । ପ୍ରେମ ପୂଜାର ବେଦୀରେ ମୁଁ ମୋ ଶରୀରକୁ ଉତ୍ସର୍ଗ କରିଦେଲି, ଆଜି ମୋର ସେ ବିଦ୍ୱାନ ଦେବତା, ସେ ଆନନ୍ଦରେ ଏ ଉପହାର ଗ୍ରହଣ କରିନେଲେ । ସେ ମୋ ମନକୁ ଦେଖିଲେ ନାହିଁ, ମୋ ହୃଦୟକୁ ବୁଝିଲେ ନାହିଁ, ମୋ ପୂଜାକୁ ଧ୍ୟାନ ଦେଲେ ନାହିଁ । (ଗମ୍ଭୀର-ଭାବେ) ସେ ଦେବତା ନଥିଲେ, ସେ ଥିଲେ ମଣିଷ । ତାଙ୍କ ଆଗରେ ଏ ଶରୀରଟା ହିଁ ବଡ଼ ହୋଇଗଲା । ଶରୀର ! ପୁଣି ଏହି ଶରୀର ! (ଚିତ୍କାର କରିଉଠି) ଏ ଶରୀରଟା ବଡ଼ ପ୍ରତାରକ । (ବେଦନାରେ କମ୍ପିତ-କଣ୍ଠ) ଏ ଶରୀରଟାକୁ ମୁଁ ଘୃଣାକରେ, ନା—ନା—ତା' ସାଙ୍ଗରେ ବି ଭଲପାଏ, ମୁଁ ତାକୁ ଘୃଣାକରେ—କିନ୍ତୁ—କିନ୍ତୁ, ଶେଷରେ ଏ ଶରୀର ତ ମୋର ହୋଇରହିବ । ମୋ ଛଡ଼ା ଏହା ଆଉ କୁଆଡ଼େ ଯିବ ? ଏ ଦେହ ମୋର, ସେଥିପାଇଁ ମୁଁ ମଧ୍ୟ ତାକୁ ଭଲପାଏ । ତା'କୁ ଆକ୍ରମଣ କଲେ ତମେ କୁଆଡ଼େ ଯିବ ? ନା ତା ପ୍ରତି କୃତଘ୍ନ ହୁଅନାହିଁ । ତାହା ନିଜେ ଜଳ ମଧ୍ୟ ତମକୁ ତ କେତୋଟି ମୁହୂର୍ତ୍ତର

ଆନନ୍ଦ ପୁଣି ଦେଇଛନ୍ତି ! ସ୍ୱର୍ଗୀୟ ଆନନ୍ଦ । ତମେ ଭୁଲିଯାଇଛ ? ତାହା ତମକୁ ଏକ ମୁହୂର୍ତ୍ତରେ ନେଇଯାଇଥିଲା ତମଠାରୁ ବହୁତ ଉଚ୍ଚ ଏକ ଦିବ୍ୟଲୋକକୁ । ତମେ ତାହା ଅସ୍ୱୀକାର କରିପାରିବ ? ବର୍ତ୍ତମାନ ସେହି ଶରୀର ସେହି ସ୍ୱର୍ଗୀୟ କ୍ଷଣର— ସେହି ଆନନ୍ଦମୟ ମୁହୂର୍ତ୍ତର ସାକ୍ଷ୍ୟବହନ କରୁଛି··· ଏକ କୋମଳ ସୁନ୍ଦର କଳିକା, ଭବିଷ୍ୟତର ଏକ ହାସ ଛଳଛଳ ସୁନ୍ଦର ଜୀବନର ବୀଜ—ମୋର ସନ୍ତାନ···ମୋର ଜୀବନ···ହଁ ବର୍ତ୍ତମାନ ମୁଁ ମୋର ଏ ଶରୀର ରକ୍ଷା କରିବାକୁ ଚାହୁଁଛି ତା'ର ପାଇଁ, (ଆଖିବୁଜି ବ୍ୟଥା ସ୍ୱରରେ ଗୁଣୁଗୁଣୁ ହୋଇଉଠିବା) ତା'ର ନିଶ୍ଚୟ ଗୋଟିଏ ମାଆ ଦରକାର, ନିଜର ଜଣେ ବାପା, ଗୋଟିଏ ସୁନ୍ଦର ଘର—ତା'ର ନାଆଁଟି ମଧ୍ୟ ସୁନ୍ଦର ହେବ !

[ଅନ୍ଧାର—ତା'ପରେ ଆଲୁଅ ପୁଣି ଜଳିବା—ଗୋଟିଏ ଘଡ଼ିର ଟିକ୍ ଟିକ୍ ଶବ୍ଦ—ବେଞ୍ଚରେ ଡକ୍ଟର ପୂର୍ବପରି ଠିଆ ହୋଇଥିବା । ଅନ୍ୟମାନେ ନିଜ ସ୍ଥାନରେ ବସିଥିବା]

ମିଷ୍ଟର କାଶୀକର : (ନିଜ ହାତରେ ଧରିଥିବା ଓ୍ୱାଚ୍ ଟେବୁଲ ଉପରେ ରଖିବା) ହଁ ସମୟ ହୋଇଗଲା, ଯାହା ଜାଣାପଡ଼ୁଛି ଆସାମୀଙ୍କର କିଛି କହିବାର ନାହିଁ । କିଛି କହିଲେ ମଧ୍ୟ କିଛି ଯାଏ ଆସେ ନାହିଁ । ତାଙ୍କ ଅପରାଧ ସମ୍ପର୍କରେ ଯାହା ସାକ୍ଷ୍ୟ ପ୍ରମାଣ ମିଳିବାକଥା ମିଳି-ସାରିଛି, ଏଥର ଜଜ୍‌ମେଣ୍ଟ । ରୋକଡ଼େ, ମୋ ଓ୍ୱିଗ୍ ?

[ସେକଣ୍ଡେ ତରବର ଭାବେ ଓ୍ୱିଗ୍
ଖୋଲି କାଶୀକରଙ୍କୁ ଦେବା—କାଶୀକର
ତାହା ପିନ୍ଧି ଗମ୍ଭୀର ଭାବରେ କହିବା]

ଆସାମୀ ମିସ୍ ବେଣୀରେ, ମୁଁ ଯାହା କହିବାକୁ ଯାଉଛି ମନଦେଇ ଶୁଣ । ତମେ ଯେଉଁ ଅପରାଧ କରିଛ, ତାହା ଅତି ଭୟଙ୍କର । ସେସବୁ ପାଇଁ କ୍ଷମାନାହିଁ । ତମ ପାପର ଶାସ୍ତି ନିଶ୍ଚୟ ଦରକାର, ଦାମ୍ପତ୍ୟ ଭିତ୍ତିହୀନତାର ନିଶ୍ଚୟ ପ୍ରତିବିଧାନ ଲୋଡା । ସମାଜର ନିୟମ କାନୁନ ହିଁ ସବୁଠାରୁ ବଡ଼ । ବିବାହ ଉପରେ ସମାଜର ବୁନିଆଦ ପ୍ରତିଷ୍ଠିତ । ମାତୃତ୍ୱ ସର୍ବଦା ପବିତ୍ର ଓ ନିର୍ମଳ ରହିବା ଉଚିତ । ତମେ ଏସବୁ ମୂଳରେ କୁଠାରାଘାତ କରିବାକୁ ଚେଷ୍ଟାକରିଛ । ଅଦାଲତର ଏହି ଦୃଢ଼ ମତ ଯେ ତମ ଆଚରଣ କ୍ଷମାଯୋଗ୍ୟ ନୁହେଁ । ସବୁଠାରୁ ବଡ଼କଥା ହେଉଛି, ସମାଜପ୍ରତି ତୁମର ବେଖାତିର ଭାବ । ତାହା କଦାପି କ୍ଷମା କରାଯାଇ ନପାରେ । ଅପରାଧୀମାନେ ନିଜ ସୀମା ଜାଣିବା ଉଚିତ; କିନ୍ତୁ ତୁମେ ସୀମା ବାହାରକୁ ଚାଲିଯିବାର ଦୁଃସାହସ କରିଛ । ତମର ଏ ଔଦ୍ଧତ୍ୟ ପାଇଁ ଅଦାଲତ କ୍ରୋଧାନ୍ୱିତ, ସର୍ବୋପରି ପରବର୍ତ୍ତୀ ବଂଶଧରମାନଙ୍କ ଭବିଷ୍ୟତ ତମ ହାତରେ ରହିଛି । ଏହା ଅତି ଭୟଙ୍କର କଥା । ଅଦାଲତ ଏହି ମତ ଦେଉଛନ୍ତି କି ତମେ ଯେଉଁ ସବୁ ପାପ କରିଛ ସେଥିର ବୀଜ ତମେ ଭବିଷ୍ୟତ ବଂଶଧରଙ୍କ ଭିତରେ ମଧ୍ୟ ବୁଣିଦେବାକୁ ଯାଉଛ । ତେଣୁ କେବଳ ଏବର ସମାଜ ନୁହେଁ, ଭବିଷ୍ୟତର ସମାଜ ମଧ୍ୟ ତମ କାର୍ଯ୍ୟଦ୍ୱାରା ବିପନ୍ନ ହୋଇଉଠିବ । ଏକଥା ନିଶ୍ଚୟ କହିବାକୁ ହେବ ଯେ, ତମକୁ ଚାକିରିରୁ ବାହାର କରିଦେବାକୁ ନିଷ୍ପତ୍ତିକରି ସ୍କୁଲ କର୍ତ୍ତୃପକ୍ଷ ଉଚିତ କାର୍ଯ୍ୟ କରିଛନ୍ତି ।

ଭଗବାନଙ୍କର କରୁଣାରୁ ବେଳ ଥାଉଁ ଥାଉଁ ସବୁର ପ୍ରତିକାର ହୋଇପାରିଛି। ତେଣୁ ତମେ ବା ଆଉ କେହି ଯେପରି ଏପରି କାର୍ଯ୍ୟ କେବେ ନ କରନ୍ତୁ, ସେ ଦୃଷ୍ଟିରୁ ଏ ଅଦାଲତ ରାୟ ଦେଉଛନ୍ତି କି ତମର ଜୀବନ ରକ୍ଷା କରଯିବ; କିନ୍ତୁ ତମ ଗର୍ଭର ସନ୍ତାନକୁ ନଷ୍ଟ କରି ଦିଆଯିବ।

ବେଣାରେ : ନା—ନା—ତା' କରିବାକୁ ମୁଁ ଦେବ ନାହିଁ। ତା' ମୁଁ କରାଇ ଦେବ ନାହିଁ। କେବେ ନୁହେଁ…

[ସମସ୍ତେ ମୂର୍ତ୍ତିପରି ନିଶ୍ଚଳ। ବେଣାରେ କାନ୍ଦ କାନ୍ଦ ଆସାମୀ ପକ୍ଷ ଓକିଲଙ୍କ ପାଇଁ ନିର୍ଦ୍ଦିଷ୍ଟ ଚୌକି ପାଖକୁ ଆସିବା—ସେଠି ସେ ଅର୍ଦ୍ଧମୂର୍ଚ୍ଛିତ ଭାବେ ବସିଯିବା। ତା'ପରେ ଜୋରରେ କାନ୍ଦ କାନ୍ଦ ସେ ଟେବୁଲ ଉପରେ ମୁଣ୍ଡପୋତି ଦେବା— ନୀରବ ପରିବେଶ। ଏତେବେଳକୁ ହଲରେ ଅନ୍ଧାର ହୋଇ ଯାଇଥାଏ। ଦ୍ୱାରରେ କେହି ଆଘାତ କରିବା। ସମସ୍ତ ଚମକି ସେ ଆଡ଼କୁ ଅନାଇବା। ଦ୍ୱାର ଧୀରେ ଧୀରେ ଖୋଲିବା। ତା' ଫାଙ୍କରେ ଆଲୁଅର ରେଖା ହଲ ଭିତରେ ପ୍ରବେଶ କରିବା। ଦୁଇତିନୋଟି ମୁହଁ ବାହାରୁ ଦେଖାଯିବା]

ପ୍ରଥମମୁହଁ : (ସମସ୍ତଙ୍କୁ ପ୍ରଶ୍ନ ଭରା ଆଖିରେ ଚାହିଁ) ଡ୍ରାମା ଆରମ୍ଭ ହେଇଗଲାଣି ? ଅଦାଲତ ଡ୍ରାମା ?

[ସମସ୍ତେ ଚମକି ତାହା ସ୍ମରଣ କରିବା ଓ ସଚେତନ ହୋଇ ଉଠିବା

—ସାମନ୍ତ ଲାଇଟ୍ ଜଳାଇବା—
ସମସ୍ତେ ସ୍ୱଭାବିକ ହୋଇ ଉଠିବା]

ସାମନ୍ତ : (ଆଗକୁଯାଇ) ନା—ନା ଆତୁର ହୋଇ ନାହିଁ। ଶୀଘ୍ର ଆରମ୍ଭ ହୋଇଯିବ । ଆପଣମାନେ ବାହାରେ ଅପେକ୍ଷା କରନ୍ତୁ । ଆଉ ପାଞ୍ଚ ମିନିଟ ପରେ । ମାନେ, ଆଉ କିଛି ସମୟ ପରେ ଆସନ୍ତୁ ।

[ସେ ଆଗନ୍ତୁକଙ୍କୁ ବାହାରକୁ ନେଇଯିବା]

କାର୍ତ୍ତିକ : ଆରେ, ପ୍ରକୃତରେ ଡେରି ହୋଇ ଗଲାଣି ।

ମିସେସ୍ କାଶୀକର : ସମୟ ଜଣା ପଡ଼ିଲା ନାହିଁ ।

ପୋଙ୍କେ : ସମୟ କେତେ ହେଲା ? ଅନ୍ଧାର ହୋଇ ଗଲାଣି ତ ?

ମିଷ୍ଟର କାଶୀକର : ଓଗକଡ଼େ ! ପ୍ରୋଗ୍ରାମ ସମୟ ଜଗିବା କାମ ତୋର । ତୁ ଏଯାଏ କଅଣ କରୁଥିଲୁ ? ଆମକୁ ନକହିଲୁ କାହିଁକି ? ୟୁସ୍‌ଲେସ୍ ଫେଲୋ ।

ସୁଖାତ୍ମେ : ହଉ ଛାଡ଼ନ୍ତୁ ମିଷ୍ଟର କାଶୀକର । ଏ ସମୟତକ ତ ଆମେ ବେଶ୍ ମଜା ପାଇଲେ । ମତେ ଜଣା ପଡ଼ିଲା ଯେମିତି ମୁଁ ଗୋଟିଏ ପ୍ରକୃତ ମକଦ୍ଦମା ଲଢ଼ୁଛି ।

ମିଷ୍ଟର କାଶୀକର : କମ୍ ଅନ୍—ଶୀଘ୍ର ପ୍ରସ୍ତୁତ ହୋଇ ଯାଆନ୍ତୁ । Every one କମଅନ୍, କମ୍‌ଅନ୍ ।

ପୋଙ୍କେ : ମୁଁ ସର୍ବଦା ପ୍ରସ୍ତୁତ ।

[ସେ ବେଣାରେ ଆଡ଼କୁ ଇଙ୍ଗିତ କରିବା – ସମସ୍ତେ ହଠାତ୍ ଚୁପ୍ । ତା'ପରେ ବେଣାରେଙ୍କ ଘୁରିଆଡେ ସମସ୍ତେ ରୁଣ୍ଡ ହେବା ]

ମିସେସ୍ କାଶୀକର : (ନିଜ ମୁଣ୍ଡରେ ହାତ ଲଗାଉ ଲଗାଉ) ଏସବୁ କଥା ବଡ଼୍ଘର ମନକୁ ପ୍ରକୃତରେ ବାଧୁଛି, ବଡ଼୍ଘର ପିଲାଲୋକ—

ମିଷ୍ଟର କାଶୀକର : କିନ୍ତୁ ଏସବୁ ତ—

ସୁଖାତ୍ମେ : ଜଷ୍ଟ୍ ଏ ଗେମ୍ । ଗୋଟାଏ କେବଳ ଖେଳ, ଆଉ କଅଣ ?

ପୋଙ୍ଖେ : ହଁ, ଖାଲି ଗୋଟାଏ ଖେଳ ।

କାର୍ଣ୍ଣିକ : ବେଣାରେ, ଉଠ ଉଠ, ବେଳ ହୋଇଗଲାଣି । ପ୍ରୋଗ୍ରାମ ଆରମ୍ଭ ହେବ ।

ମିସେସ୍ କାଶୀକର : (ବେଣାରେ ପିଠିରେ ଆସ୍ତେ ହାତମାରି) ଉଠ, ଉଠ ବେଣାରେ, ପ୍ରୋଗ୍ରାମ ଠିକ୍ ସମୟରେ ଆରମ୍ଭ ହେବା ଦରକାର । ଉଠ, ଉଠ, ଉଠ । ଆରେ ଏସବୁ କେବଳ ମଜା ଥିଲା, ସବୁ ମିଛ, କିଛି ସତ ହୋଇପାରେ କେବେ ?

[ସାମନ୍ତ ବାହାରୁ ପ୍ରବେଶ]

ପୋଙ୍ଖେ : ସାମନ୍ତ, ମିସ୍ ବେଣାରଙ୍କ ପାଇଁ କିଛି ଟି' ବନ୍ଦୋବସ୍ତ କରନ୍ତୁ ।

ସାମନ୍ତ : ହଁ, ହଁ ଯାଉଛି ।

ମିଷ୍ଟର କାଶୀକର : (ଉଇଟ୍ ବାହାରକରି ବସିବା—ସେ ଟେବୁଲ୍ ଉପରେ ଠିକ୍ ଟ୍ରୋଣ୍ଟି ସିସିଟି ହଠାତ୍ ଲକ୍ଷ୍ୟ କରିବା । କିଛି ସମୟ ସେ ଆଡ଼କୁ ଚାହିଁ ରହିବା । ତା'ପରେ ଅନ୍ୟମାନଙ୍କୁ ଚାହିଁ) କମ୍ଅନ୍, କମ୍ଅନ୍ । ଯଥେଷ୍ଟ ଖେଳ ହେଲା । ନାଓ ଟୁ ବିଜନେସ୍ । କମ୍ଅନ୍ ।

[ସମସ୍ତେ ମାରବରେ ଅନ୍ୟଘରକୁ ଯିବା—ବେଣାରେ ନିଶ୍ଚଳଭାବେ ବସିରହିଥିବା– ସାମନ୍ତ ଦ୍ୱାର ପାଖରୁ ତାଙ୍କୁ ଲକ୍ଷ କରିବା–ସେ ଧୀରେ ଧୀରେ ଗୋଟିଏ ପଟକୁ ଆସି ଦୃଶ୍ୟ ଆରମ୍ଭରେ ସେ ଧରି ଆସିଥିବା କଣ୍ଢେଇ ଶୁଆଟି ତଳକୁ ଗୋଟାଇବା—ଦ୍ୱାର ପାଖକୁ ପୁଣି ଯିବା— କିନ୍ତୁ ବେଣାରଙ୍କଠାରୁ କିଛି ଦୂରରେ ତାଙ୍କ ପାଦ ହଠାତ୍ ଅଟକି ଯିବା—ତାଙ୍କ ଆଡକୁ ଗୁହିଁ ସେ ସହାନୁଭୂତିରେ ଭାରାକ୍ରାନ୍ତ ହୋଇଉଠିବା । ସେ କଅଣ କରିବେ ବୁଝିପାରୁ ନଥାନ୍ତି । ଅସ୍ପଷ୍ଟ ଗଳାରେ ସେ ଡାକିବା—ମିସ୍···କିନ୍ତୁ ବେଣାରେ ପ୍ରତ୍ୟୁତ୍ତର ନଥାଇ । ସାମନ୍ତ କ'ଣ କରିବାକୁ ହେବ କିଛି ବୁଝି ନପାରି, ଅତି ସନ୍ତର୍ପଣରେ କଣ୍ଢେଇ ଶୁଆଟି ବେଣାରଙ୍କ ମୁଣ୍ଡ ପାଖରୁ କିଛି ଦୂରରେ ଟେବୁଲ୍ ଉପରେ ରଖିବା— ତା'ପରେ ଗୁଲିଯିବା । ବେଣାରେ ଟିକିଏ ହଲିଉଠିବା । କିନ୍ତୁ ପୁଣି ନିଶ୍ଚଳଭାବେ ମୁଣ୍ଡପୋତି ବସିରହିବା । ତାଙ୍କ ଆଗରେ ସେ କଣ୍ଢେଇ ଶୁଆଟି ଥୁଆ ହୋଇଥାଏ, ଦୂରରୁ ତାଙ୍କ କଣ୍ଠରେ ଶୁଭୁଥାଏ କବିତା ଅବୃତ୍ତି—]

ଶୁଆ ପଚାରୁଚି ଚଢ଼େଇକୁ
ତୋ ଆଖି କାହିଁକି ଲାଲ ?
ଚଢ଼େଇ କହୁଛି,
"ବନ୍ଧୁ ମୁଁ କହିବ କଅଣ—
ମୋ ବସା କିଏ ଭାଙ୍ଗିଦେଇଛି···"
ଆହା ବିଚରା ଚଢ଼େଇଟି···
"ଭାଇ କାଉ, ତମେ ସେଠି ଥିଲ ?
ତମେ ଦେଖିଛ କିଏ ଭାଙ୍ଗିଲା ?"

"ନା—ନା, ମୁଁ ଦେଖିନାହିଁ—
ମୁଁ ଦେଖିନାହିଁ ।"
ଆହା ବଚରା ଚଡ଼େଇଟି...

(ବେଣାରେ ମୁହଁ ଉପରେ ଲାଇଟ୍ ଫୋକସ୍ । ଆଉ ଚାରିଆଡ଼େ ଅନ୍ଧାର)

—ସମାପ୍ତ—